ବଣଜଙ୍ଗଲର ଜୀବଜନ୍ତୁ —୯ର

# ହାତୀ

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ



ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟୋର୍

ପ୍ରକାଶକ

ଶ୍ରୀ ଅନନ୍ତ ମିଶ୍ର, ପ୍ରୋପ୍ରାଇଟର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ—୨

ଚତୁର୍ଥ ପ୍ରକାଶ

୧୯୬୫

ମୁଦ୍ରାକର

ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର
ପ୍ରସାଦ ପ୍ରେସ, କଟକ-୨

ମୂଲ୍ୟ—ପଚ୍ଚିଶ ପଇସା ମାତ୍ର



— ୧ —

ବଣଜଙ୍ଗଲରେ ଯେତେପ୍ରକାର ଜୀବଜନ୍ତୁ ଅଛନ୍ତି, ହାତୀ ସେ ସମସ୍ତଙ୍କ ଅପେକ୍ଷା ବଡ଼ । ଦୂରରୁ ଏହା ଗୋଟାଏ ପାହାଡ଼ ପରି ଦେଖାଯାଏ; ତେଣୁ ପଣ୍ଡିତମାନେ ହାତୀକୁ କହନ୍ତି, 'ଚଳବୁଲ କରୁଥିବା ପାହାଡ଼ ।'

ଆମ ଦେଶରେ ହାତୀସବୁ ପ୍ରାୟ ଆଠ ହାତଯାଏ ଉଚ୍ଚ ହୁଅନ୍ତି । ଓଜନ ଶହେ ମହଣରୁ ମଧ୍ୟ ବେଶି ହେବ । ସେମାନଙ୍କ ମୁହଁ ଆଗରେ ନାକଟା ଓହଳ ତଳେ ଲଗିଥାଏ ।

ତାହାକୁ ଶୁଣ୍ଢ କହନ୍ତି । ଏ ଶୁଣ୍ଢ ତାଙ୍କର ନାକର କାମ କରେ, ହାତର ବି କାମ କରେ । ଏହି ଶୁଣ୍ଢଦ୍ୱାରା ହାତୀ ନିଶ୍ୱାସ ପ୍ରଶ୍ୱାସ ନିଏ; ଗନ୍ଧ ଜାଣିପାରେ, ପୁଣି ଖାଇବା ଜିନିଷ ସବୁ ଏଥିରେ ଉଠାଇ ପାଟିରେ ପୂରାଏ; ଶୋଷ କଲେ ପାଣି ନେଇ ପାଟି ଭିତରେ ଢାଳେ । ଥରକେ ଗରାଏ ପାଣି ହାତୀ ତା ଶୁଣ୍ଢରେ ଧରିପାରେ । ସେ ଶୁଣ୍ଢଦ୍ୱାରା ଗଛର ଡାଳପତ୍ର ଭାଙ୍ଗେ, ଅନ୍ୟାନ୍ୟ କାମ ମଧ୍ୟ କରେ । ଶୁଣ୍ଢକୁ ମନଇଚ୍ଛା ଏପାଖ ସେପାଖ ହଲାଏ, ଉପରକୁ ଟେକେ; ଇଚ୍ଛା କଲେ ସିଧା ଲମ୍ବାଇ ଦିଏ, ନ ହେଲେ ଗୁଡ଼ାଇ କରି ରଖେ ।

ଏହି ଶୁଣ୍ଢକୁ ଥୋରପାହାର ବି କହନ୍ତି । ଏହା ଗୋଟିଏ ପୋଲା ନଳୀ ପରି । ତା ଆଗରେ ମଣିଷଙ୍କ ଆଙ୍ଗୁଠି ଭଳି ଗୋଟିଏ ସରୁ ଆଙ୍ଗୁଠି ଥାଏ । ତାହାଦ୍ୱାରା ହସ୍ତୀ ସେ ଖୁବ୍ ଛୋଟଛୋଟ ଜିନିଷ ଧରି ନେଇପାରେ । ଶୁଣାଯାଏ, ଏପରି କି ଛୁଞ୍ଚିଟିଏ ମଧ୍ୟ ସେ ସେହି ଆଙ୍ଗୁଠି ସାହାଯ୍ୟରେ ହସ୍ତୀ ଉଠାଇନିଏ ।

ଏହି ଶୁଣ୍ଢର ଦୁଇ ପାଖରେ ଦୁଇଟା ବଡ଼ ଦାନ୍ତ ପଦାକୁ ବାହାରିଥାଏ । ମାଈ ହାତୀର ଦାନ୍ତ ସାନସାନ; କିନ୍ତୁ ଅଣ୍ଡିରା ହାତୀର ଦାନ୍ତ ଖୁବ୍ ବଡ଼ ହୁଏ । ଗୋଟିଏ ଗୋଟିଏ ହାତୀର ଦାନ୍ତ ତିନି ଚାରି ହାତରୁ ବେଶି ଲମ୍ବ ଥିବାର ଦେଖାଯାଏ । ଜଣେ ଶିକାରୀ ଆଫ୍ରିକା ଜଙ୍ଗଲରୁ ଥରେ ଗୋଟିଏ ହାତୀ ମାରିଥିଲେ । ତାହାର ଦାନ୍ତ ତେର ହାତ ଲମ୍ବ ଥିଲା; ଦୁଇଟିଯାକ ଦାନ୍ତ ଓଜନରେ ଚାରିମହଣ ହୋଇଥିଲା ।

ଏହି ବଡ଼ ଦାନ୍ତ ଦୁଇଟା ବାଦ୍ ହାତୀର ପାଟି ଭିତରେ ତଳ ଉପର ହୋଇ ଆଉ ଚବିଶଗୋଟି ଦାନ୍ତ ଥାଏ । ଏ ଦାନ୍ତଗୁଡ଼ିକ

ଏପରି ମଜଭୁତ ଯେ, ବଡ଼ବଡ଼ ଗଛର ଡାଳ ଅନାୟାସରେ ହାତୀ ଭାଙ୍ଗିବାକୁ ଦେଇପାରେ ।

ହାତୀର ଆଖି ଦୁଇଟି ଅତି ସାନ, କାନ ଦୁଇଟା କୁଲା ପରି ବଡ଼ବଡ଼ । ଆଫ୍ରିକା ଦେଶର ହାତୀଙ୍କ କାନ ଏତେ ବଡ଼ ଯେ ଗୋଟାଏ କାନକୁ ବିଛଣାରୂପେ ବିଛାଇ ଜଣେ ଲୋକ ନିଶ୍ଚିନ୍ତରେ ଶୋଇପାରିବ ।

ହାତୀର ଗୋଡ଼ ଚାରିଟା ଘରର ମଝି ଖୁମ୍ବ ପରି ଦେଖାଯାଏ । ଆଗ ଦୁଇଗୋଡ଼ର ପାଦରେ ପାଞ୍ଚୋଟି ଲେଖାଏଁ ଏବଂ ପଛ ଦୁଇ ଗୋଡ଼ର ପାଦରେ ଚାରୋଟି ଲେଖାଏଁ ଆଙ୍ଗୁଠି ଥାଏ । ଏ ଅଙ୍ଗୁଠି ସବୁ ଗୋଲଗୋଲ, ପାଦ ସାଙ୍ଗରେ ମିଶି ରହିଥାଏ; ଆମ ଆଙ୍ଗୁଠି ପରି ପଦାକୁ ବାହାରି ନ ଥାଏ ।

ହାତୀ ପଛରେ ଥିବା ଲାଞ୍ଜଟି ଦେହ ତୁଳନାରେ ଅତି ସରୁ । ଲାଞ୍ଜ ଅଗରେ ଅଳ୍ପ କେତୋଟି ରୁମ ଥାଏ । ହାତୀ ଦେହଯାକ ଆଉ କେଉଁଠି ରୁମ ନ ଥାଏ ।

ଘୋଡ଼ା, ଗାଈ, ଛେଳି ପ୍ରଭୃତିଙ୍କ ଛୁଆ ଯେପରି ପିଲାଦିନେ ମା ଦୁଧ ଖାଇ ବଞ୍ଚନ୍ତି, ହାତୀଛୁଆ ମଧ୍ୟ ସେହିପରି ପିଲାଦିନେ ମା ଦୁଧ ଖାଇ ବଞ୍ଚେ । ମାଈଘୋଡ଼ା, ଗାଈ, ମାଈଛେଳି ପ୍ରଭୃତିଙ୍କ ପହ୍ଲା ସେମାନଙ୍କ ପଛ ଦୁଇ ଗୋଡ଼ ମଝିରେ ଥାଏ । କିନ୍ତୁ ମଜାର କଥା ଯେ, ମାଈହାତୀର ପହ୍ଲା ତାର ଆଗ ଦୁଇ ଗୋଡ଼ ମଝିରେ ଥାଏ । ଛୁଆ ପାଟିରେ ସେ ପହ୍ଲା ପୂରାଇ ଦୁଧ ଖାଏ; ସେତେବେଳେ ଥୋରିପାହାର ଦରକାର ହୁଏ ନାହିଁ ।

ସାରା ପୃଥିବୀରେ କେବଳ ଆଫ୍ରିକା ଓ ଏସିଆ ମହାଦେଶରେ ହାତୀ ଅଛନ୍ତି । ଏସିଆ ମହାଦେଶର ଭାରତବର୍ଷ, ସିଂହଳ, ବ୍ରହ୍ମଦେଶ, ଶ୍ୟାମ, ମାଳୟ ପ୍ରଭୃତି ଅଞ୍ଚଳରେ ହାତୀ

ରହନ୍ତି । ଭାରତବର୍ଷରେ ଆମ ଓଡ଼ିଶା, ମଧ୍ୟଭାରତ ଓ ଆସାମର ଜଙ୍ଗଲରେ କେବଳ ହାତୀ ଦେଖାଯାଆନ୍ତି ।

ଆମ ଦେଶର ହାତୀ ପୋଷା ମାନନ୍ତି । ଲୋକେ ଏହି ହାତୀମାନଙ୍କୁ ପୋଷି ତାଙ୍କଦ୍ୱାରା ବହୁତ କାମ କରାନ୍ତି । ହାତୀ ଉପରେ ବସି ବଣଜଙ୍ଗଲ ଭିତରକୁ, ପାହାଡ଼ ପର୍ବତ ଉପରକୁ ସୁବିଧାରେ ଯାଇ ହୁଏ । ହାତୀ ଭାରି ଜନିଷ ଖୁବ୍ ସହଜରେ ବୋହି ନେଇ ଯାଏ । ଯୁଦ୍ଧ ସମୟରେ ସେ ବହୁତ କାମରେ ଲାଗେ ।

ଆଫ୍ରିକାର ହାତୀ ଜମା ପୋଷା ମାନେ ନାହିଁ । ଆମ ଦେଶ ହାତୀ ଅପେକ୍ଷା ସେଗୁଡ଼ିକ ଖୁବ୍ ବଡ଼ ଓ ଭୀଷଣ ଦେଖାଯାଆନ୍ତି ।

ହାତୀ ଗଛର ଡାଳପତ୍ର ଭାଙ୍ଗି ଖାଏ । ମୋଟା ଡାଳର କାଠ ମଧ୍ୟ ସେ ଚୋବାଇ ଖାଇଯାଏ । ଧାନ, ଗହମ ଆଦି ଫସଲ ଖାଇବାକୁ ସେ ସୁଖପାଏ । କଦଳୀ, ବେଲ, କଇଥ, ନଡ଼ିଆ ପ୍ରଭୃତି ଫଳ ହାତୀର ପ୍ରିୟ ଖାଦ୍ୟ । ଲୋକେ କହନ୍ତି, ହାତୀ କଇଥ ଗୋଟାସୁଦ୍ଧା ଗିଳିଦିଏ । ପରେ ତା ଗୋବରରେ ସେ କଇଥ ସେହିପରି ଗୋଟା ପଡ଼ିବାର ଦେଖାଯାଏ । କଇଥ ଉପରର ଟାଣ ଖୋଳ ଠିକ୍ ରହିଥାଏ; ମାତ୍ର ଭିତରର ଶସ ଯେ ମିଳାଇ କିପରି ହାତୀ ପେଟକୁ ଯାଏ, ତାହା ବୁଝାଯାଏ ନାହିଁ । କିନ୍ତୁ ଏ କଥା କେତେଦୂର ସତ, କେହି କହିପାରନ୍ତି ନାହିଁ ।

ଫସଲ ସମୟରେ ହାତୀପଲ ଧାନ, ଗହମ କିଆରୀରେ ପଶି ଖୁବ୍ ଧ୍ୱସ୍ତବିଧ୍ୱସ୍ତ କରିଦେଇ ଯାଆନ୍ତି । ଯାହା ଖାଇବାର ଖାଆନ୍ତି; କିନ୍ତୁ ତାଙ୍କ ପାଦତଳେ ଦଳିହୋଇ ବହୁତ ଫସଲ ନଷ୍ଟ ହୋଇଯାଏ ।

ହାତୀ ମୋଟେ ଘାସ ଖାଏ ନାହିଁ ।

ପାଣି ହାତୀର ବଡ଼ ପ୍ରିୟ । ନଈ ପୋଖରୀ ଦେଖିଲେ, ହାତୀ ଖୁସିରେ ଯାଇ ସେଥିରେ ଖେଳେ । ବହୁତ ସମୟ ଯାଏ ପାଣିରେ ପହଁରେ, ବୁଡ଼େ, ଶୁଣ୍ଢରେ ପାଣି ଧରି ଦେହସାରା ସିଞ୍ଚେ, ଅନ୍ୟ ଉପରକୁ ପକାଇ କଉତୁକ କରେ । ପଙ୍କ ଆଣି ଦେହସାରା ବୋଳିହୁଏ । ପଙ୍କ ବହୁ ସମୟ ଦେହରେ ଲାଗି ରହି ଶୁଖିଗଲେ, ଗଛରେ ଘଷି ହୋଇ ତାହା ଝାଡ଼ି ସେ ସଫା କରି ଦିଏ । ହାତୀ ପାଣିରେ ବୁଡ଼ି ଗାଧୋଏ; କିନ୍ତୁ ଉପରୁ ଟୋପା ଟୋପା ପାଣି ତା ଦେହରେ ପଡ଼ିଲେ, ସେ ତାହା ଆଦୌ ସହିପାରେ ନାହିଁ । ଟୋପାଏ ଦୁଇଟୋପା ପାଣି ପଡ଼ିଲାକ୍ଷଣି, ସେ ଭୟରେ ସେଠୁ ଛୁଟି ପଳାଇଯାଏ ।

ବଣୁଆ ହାତୀସବୁ ଦଳ ବାନ୍ଧି ରହନ୍ତି । ଗୋଟିଏ ଗୋଟିଏ ଦଳରେ ତିରିଶ, ଚାଳିଶଟି ପର୍ଯ୍ୟନ୍ତ ହାତୀ ଥାଆନ୍ତି । ଆଫ୍ରିକା ଜଙ୍ଗଲରେ ଗୋଟିଏ ଦଳରେ ଚାରିଶହ ହାତୀ ଥିବାର ଜଣେ ଶିକାରୀ ଲେଖିଅଛନ୍ତି ।

ହାତୀମାନଙ୍କ ଆଖି ତ ସାନସାନ, ତେଣୁ ସେମାନେ ଭଲ ଦେଖିପାରନ୍ତି ନାହିଁ । କିନ୍ତୁ ବହୁତ ଦୂରରେ ସାମାନ୍ୟ ଟିକିଏ ଶବ୍ଦ ହେଲେ ତାହା ଶୁଣିପାରନ୍ତି । ବାସନା ବାରିବା ଶକ୍ତି ତାଙ୍କର ସବୁଠାରୁ ବେଶି । କେଉଁଠି କଅଣ ଖାଇବା ଜିନିଷ ଅଛି ବା କେଉଁଆଡ଼ୁ କିଏ ମାରିବାକୁ ଆସୁଛି, ବାସନା ବାରି ଏହା ବହୁତ ଦୂରରୁ ସେମାନେ ଜାଣିପାରନ୍ତି । ତେଣୁ ହାତୀ ଶିକାର କରିବା ସହଜ ନୁହେ ।

ଦୁଇଟା ବା ଦୁଇ ଦଳ ହାତୀ ଭିତରେ ବଣରେ ଥରେ ଥରେ ଯୁଦ୍ଧ ଲାଗିଯାଏ । ସେତେବେଳେ ତିନ ଚାରି ଦିନଯାଏ ସେ ବଣ ଗୋଟାସାରା କମ୍ପିଉଠେ । ବଣର ଗଛ ଲତା ବୁଦା ଧ୍ୱସ୍ତବିଧ୍ୱସ୍ତ ହୋଇଯାଏ । ସେ ଗର୍ଜନରେ ଆଉ କୌଣସି ଜନ୍ତୁ ଆଖପାଖରେ

ରହିପାରନ୍ତି ନାହିଁ । ଗୋଟାଏ ପକ୍ଷ ନିତାନ୍ତ ଦୁର୍ବଳ ହୋଇ ସେଠା ଛାଡ଼ି ପଳାଇ ନ ଯିବା ଯାଏ ଯୁଦ୍ଧସରେ ନାହିଁ ।

ବାଘ, ସିଂହ, ଭାଲୁଙ୍କ ସହିତ ମଧ୍ୟ ବଣରେ ହାତୀଙ୍କର ସମୟ ସମୟରେ ଲଢ଼େଇ ଲାଗିଯାଏ । ବାଘ ବା ସିଂହ ହାତୀର ପିଠି ଉପରକୁ କୁଦିପଡ଼ିବାକୁ ଚେଷ୍ଟା କରନ୍ତି । ହାତୀ ଚେଷ୍ଟା କରେ, ସେମାନଙ୍କୁ ପାଦତଳେ ରଖି କଚଡ଼ି ଚାପିଦେବ । ସିଂହ କି ବାଘ ହାତୀ ପାଦତଳେ ରହିଗଲେ ଏକାଥରକେ ସେମାନଙ୍କର ପେଟର ଅନ୍ତବୁଜୁଳା ବାହାରିପଡ଼େ । ମାତ୍ର ହାତୀ ସେମାନଙ୍କୁ ନିଜ ଅକ୍ତିଆରରେ ରଖି ନ ପାରିଲେ, ସେମାନେ ତା ପିଠି ଉପରକୁ କୁଦିପଡ଼ି ବେକପାଖରେ ବସନ୍ତି ! ଦାନ୍ତ ଓ ନଖରେ ହାତୀର ମୁଣ୍ଡ କଣା କରି ମାଂସ ଖାଆନ୍ତି, ରକ୍ତ ପିଅନ୍ତି । ହାତୀ ଜୀବନ-ଭୟରେ ବଣଯାକ ଧାଁ ଦଉଡ଼ କରେ । ଏପରି ଦଉଡ଼ ଦଉଡ଼ କୌଣସି ଗଛର ଡାଳରେ ପିଟି ହୋଇଗଲେ ବାଘ କି ସିଂହ ତଳେ ପଡ଼ିଯାଆନ୍ତି; ନ ହେଲେ ଦଉଡ଼ି ଦଉଡ଼ି କିଛି ଦିନ ପରେ ହାତୀ ମରିଯାଏ ।

କଥାରେ ଅଛି—ହାତୀ ଜୀଇଥିଲେ ଲକ୍ଷେ ଟଙ୍କା, ମଲେ ବି ଲକ୍ଷେ ଟଙ୍କା । ପୋଷାହାତୀର ଦାମ୍ ତ ବହୁତ ବେଶି । ମଲେ ମଧ୍ୟ ତା ଦେହରୁ ଯେଉଁ ଦାନ୍ତ ଓ ହାଡ଼ ମିଳେ, ତାହା ଅନେକ ଟଙ୍କାରେ ବିକି ହୁଏ । ହାତୀ ଦାନ୍ତରେ ଅଳଙ୍କାର, ପଲଙ୍କ, ବିମାନ, ବାସନ ଆଦି ସଉଖିନ୍ ଜିନିଷ ତିଆରି ହୁଏ । ରାଜା, ମହାରାଜା, ଧନୀଲୋକେ ବହୁତ ଟଙ୍କା ଦେଇ ତାହା କିଣନ୍ତି ।

ହାତୀ ସାଧାରଣତଃ ଶହେ ବର୍ଷ ବଞ୍ଚିରହେ । କୌଣସି କୌଣସି ହାତୀ ଦେଢ଼ଶହ ବର୍ଷ ପର୍ଯ୍ୟନ୍ତ ବଞ୍ଚିଥିବାର ମଧ୍ୟ ଶୁଣାଯାଏ ।

ମରିବା ସମୟ ହେଲେ, ହାତୀମାନେ ଆଗରୁ ତାହା ଜାଣି ପାରନ୍ତି । ବଣରେ ଥିବା ହାତୀମାନେ ମରିବା ଆଗରୁ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନକୁ ଚାଲିଯାଆନ୍ତି, ସେଇଠାରେ ପଡ଼ି ମରନ୍ତି । ସେ ସ୍ଥାନଟିକୁ ହାତୀଙ୍କ ମଶାଣି କହିଲେ ଚଳେ । ପାହାଡ଼, ପର୍ବତ ମଝିରେ ଖୁବ୍ ନିଘୋଡ଼ ଜାଗାରେ ହାତୀମାନେ ସେ ମଶାଣିଭୂଇଁ ଠିକ୍ କରି ନେଇଥାନ୍ତି । ବହୁକାଳ ପରେ କେବେ କିପରି ସେ ସ୍ଥାନ ମଣିଷ ଦେଖିପାରିଲେ, ସେଠାରେ ପଡ଼ି ରହିଥିବା ବହୁତ ଦାନ୍ତ ଏବଂ ହାଡ଼ ସଂଗ୍ରହ କରେ ।

—୨—

ପୋଷା ହାତୀଙ୍କୁ ଯେ ଜଗାରଖା କରେ, ତାଙ୍କୁ ଖାଇବାକୁ ଦିଏ, ତାଙ୍କର ସେବା କରେ, ତାକୁ 'ମାହୁନ୍ତ' କୁହାଯାଏ । ହାତୀ ମାହୁନ୍ତକୁ ଭାରି ଖାତିର କରେ । ସବୁବେଳେ ମାହୁନ୍ତ କଥା ମାନି ଚଳେ ।

ହାତୀ ପିଠିରେ ବସିବା ପାଇଁ ଗୋଟାଏ ଚଉକିଭଳି ଜିନିଷ ବନ୍ଧାହୁଏ, ତାକୁ 'ହାଉଦା' କୁହାଯାଏ । ଯେଉଁ ଲୁହା କଣ୍ଟା ଧରି ମାହୁନ୍ତ ହାତୀକୁ ଚଳାଏ, ତାର ନାମ 'ଅଙ୍କୁଶ' । ତାହା ମୁନିଆ ହୋଇଥାଏ । ହାତୀ କଥା ନ ମାନିଲେ, ମାହୁନ୍ତ ସେଥିରେ ତା ମୁଣ୍ଡକୁ ଫୋଡ଼ିଦିଏ ।

ଅନେକ କହନ୍ତି, ହାତୀର ଦେହଟି ଯେପରି ମୋଟା, ତାର ବୁଦ୍ଧି ମଧ୍ୟ ସେହିପରି ମୋଟା । ତେଣୁ ଯେଉଁ ପିଲା ଭଲ ପାଠ ନ ପଢେ, ତାକୁ 'ଗଜମୂର୍ଖ' ବୋଲି କହିଥାଆନ୍ତି । ହାତୀର ଆଉ ଗୋଟିଏ ନାମ 'ଗଜ' ।

କିନ୍ତୁ ବେଶି ଲୋକ କହନ୍ତି ଯେ, ହାତୀ ବଡ଼ ବୁଦ୍ଧିଆ । ଗୋଟିଏ କଥାକୁ ସେ ବହୁତ ଦିନଯାଏ ମନେ ରଖେ । ଯାହା

ଉପରେ ଘୂରିଥାଏ, ଯେତେ ବର୍ଷ ଯାଉ ପଛକେ, ମନେ ରଖି ସେ ତା ଉପରେ ଦାଉ ସାଧେ । ଯାହା ଉପରେ ଖୁସି ହୋଇଥାଏ, ତାର କିଛି ନା କିଛି ଉପକାର ନିଶ୍ଚୟ କରେ ।

ଥରେ ଦଳେ ଶିକାରୀ ହାତୀ ଉପରେ ବସି ବଣକୁ ଶିକାର କରିବାକୁ ଯାଇଥିଲେ । ହାତୀ ଆଗକୁ ଆଗକୁ ଚାଲିଛି; କିନ୍ତୁ ପଛରୁ ଯେ ଗୋଟାଏ ବଡ଼ ସିଂହ ତାକୁ ଛକିଛି, ସେ କଥା କେହି ଜାଣି-ପାରି ନ ଥିଲେ । କିଛି ବାଟ ଗଲା ପରେ ସିଂହଟା ହଠାତ୍ ଆଗକୁ କୁଦିପଡ଼ିଲା । ସେଥିପାଇଁ କେହି ପ୍ରସ୍ତୁତ ନ ଥିଲେ । ଆଗରେ ସିଂହକୁ ଦେଖି ହାତୀ ଚମକି ଉଠିଲା । ଶିକାରୀମାନେ ମଧ୍ୟ ଡରିଗଲେ । ହାତୀ ଦୁଇ ଖୋଜ ପଛକୁ ଦୁଞ୍ଚି ଆସିଲା । ସେତିକି-ବେଳେ ଉପରେ ଗୋଟାଏ ଗଛର ଡାଳ ଫଟି ହୋଇଯିବାରୁ ହାଉଡ଼ାରୁ ଖଣ୍ଡେ ଭାଙ୍ଗିଗଲା । ହାତୀପିଠିରେ ବସିଥିବା ଜଣେ ଶିକାରୀ ଛିଟିକି ସଙ୍ଗେ ସଙ୍ଗେ ତଳେ ପଡ଼ିଗଲେ । ସିଂହ ଆଉ ହାତୀକୁ ଛକିବ କଅଣ, ସେହି ଲୋକ ଉପରକୁ କୁଦିପଡ଼ିଲା ।

ଦଇବଯୋଗକୁ ସିଂହର ଆଗ ଦୁଇ ଗୋଡ଼ ଶିକାରୀ ପିଠି ଉପରେ ନ ପଡ଼ି ଟିକିଏ ଆଗରେ ପଡ଼ିଲା । ଶିକାରୀ ତା ପେଟତଳେ ଲମ୍ବହୋଇ ପଡ଼ିଥାଆନ୍ତି । ହାତୀ ପିଠିରେ ବସିଥିବା ଶିକାରୀମାନଙ୍କୁ ଆଉ କିଛି ବୁଦ୍ଧି ଦିଶିଲା ନାହିଁ । ସେମାନେ ବନ୍ଧୁକ ମାରିଲେ ସିଂହ ସାଙ୍ଗେ ସାଥୀଲୋକଟି ବି ମରିବ; ବନ୍ଧୁକ ନ ମାରିଲେ ଆଖିଆଗରେ ସାଙ୍ଗକୁ ସିଂହ ଖାଇଯିବ । ଏପରି ଅବସ୍ଥାରେ ଉପାୟ କଅଣ କେହି ଠିକ କରିପାରିଲେ ନାହିଁ । ହାତୀକୁ ସାଙ୍ଗେ ସାଙ୍ଗେ କିନ୍ତୁ ଗୋଟାଏ ବୁଦ୍ଧି ଦେଖାଗଲା ।

ସିଂହର ଆର ପାଖରେ ଗୋଟାଏ ମଧ୍ୟଭଳିଆ ମୋଟ ଗଛ ଥିଲା । ହାତୀ ଯେଉଁ ପାଖରେ ଅଛି, ସେହି ପାଖକୁ ତାର ବଡ଼

ଡାଳଟା ଲମ୍ବି ଆସିଥିଲା । ସିଂହ ଯେତେବେଳେ ଶିକାରୀଙ୍କୁ ପେଟ ତଳେ ରଖି ଠିଆ ହୋଇଛି, ସେତିକିବେଳେ ହାତୀ ସେ ଗଛର ଡାଳଟାକୁ ଶୁଣ୍ଢରେ ଧରି ଟାଣିଲା । ଏତେ ଜୋରରେ ଟାଣିଲା ଯେ, ଗଛଟା ସିଂହ ଉପରେ ଶୋଇପଡ଼ିଲା । ସିଂହ ଏକାବେଳକେ ଚାପି ହୋଇଗଲା । ଏହି ସମୟରେ ମାହୁନ୍ତ ହାତୀ ପିଠିରୁ ଡେଇଁପଡ଼ି ତଳେ ପଡ଼ିଥିବା ଶିକାରୀଙ୍କ ଗୋଡ଼ ଧରି ପଛକୁ ଟାଣିନେଲା । ସିଂହର ନଖ ବାଜି ସେ ଖଣ୍ଡିଆଖାବରା ହୋଇ ଯାଇଥିଲେ; ଭୟରେ ଅଚେତ ମଧ୍ୟ ହୋଇ ପଡ଼ିଥିଲେ । ଗଛ ତଳେ ଚାପି ହୋଇ ସିଂହ ଥରେ ମାତ୍ର ଗର୍ଜନ କରିଛି, ଦୁଇ ଚାରିଥର ଥକା ଗୋଡ଼ ବାଡ଼େଇଥିବ ରକ୍ତ ବାନ୍ତି କରି ପକାଇଲା; ତା ପରେ ସବୁ ଶେଷ ।

ହାତୀର ବୁଦ୍ଧିବଳରୁ ସେଥର ସେ ଶିକାରୀ ଜୀବନରେ ରହିଗଲେ ।

—୩—

ପୋଷା ହାତୀ କେବେକେବେ ପାଗଳ ହୁଏ । ସେତେବେଳେ ସେ ମାହୁନ୍ତ କଥା ଆଉ ମାନେ ନାହିଁ । ଯାହାକୁ ଦେଖେ, ତାକୁ ମାରି ଗୋଡ଼ାଏ । ଆଗରେ ଘର, ଗଛ, ଫସଲ ଯାହା ପାଏ, ସବୁ ଭାଙ୍ଗି ପକାଏ, ଧ୍ୱସ୍ତନସ୍ତ କରିଦିଏ । ସେତେବେଳେ ତାକୁ ଡରି ଲୋକେ କୁଆଡ଼େ ପଳାନ୍ତି ।

ପୁରୀରେ ଜଗନ୍ନାଥ ଠାକୁରଙ୍କର କେତୋଟି ହାତୀ ଅଛନ୍ତି । ଥରେ ସେଥିଭିତରୁ ଗୋଟିଏ ହାତୀ ଏହିପରି ପାଗଳ ହୋଇଯାଇଥିଲା ।

ରାସ୍ତା କଡ଼ରେ ଗୋଟିଏ ଗରିବ ବୁଢ଼ୀ ନିତି ବସି କଦଳୀ ବିକେ । ସେହି କଦଳୀ ବିକି ଯାହା ପଇସା ପାଏ, ସେଥିରେ ଚଳୁଥାଏ । ତାହାର ଗୋଟିଏ ଛୋଟ ନାତୁଣୀ ବ୍ୟତୀତ ଆଉ କେହି ନ ଥାନ୍ତି । ବୁଢ଼ୀ କଦଳୀ ବିକୁଥିବାବେଳେ ନାତୁଣୀଟି ତା ପାଖରେ ବସି ଖେଳୁଥାଏ ।

ହାତୀ ପ୍ରତିଦିନ ସେହି ବାଟ ଦେଇ ନଈକୁ ଆସେ । ବୁଢ଼ୀର ଦୋକାନ ପାଖରେ ଆସି ହାତୀ ପହଞ୍ଚିଗଲେ, ପିଲାଟି ଆଈଠାରୁ ଗୋଟିଏ ଦୁଇଟି କଦଳୀ ମାଗିଆଣି ହାତୀକୁ ଦିଏ । ହାତୀଟି ଆନନ୍ଦରେ ଶୁଣ୍ଢରେ ସେ କଦଳୀକୁ ନେଇ ପାଟିରେ ପୂରାଇ ଖାଏ । ପିଲାଟିକୁ ଏହା ବଡ଼ କୌତୁକ ଲାଗେ; ସେ ସେଠାରେ ଠିଆହୋଇ ଦେଖୁଥାଏ । ହାତୀ କଦଳୀ ଖାଇସାରି ନିଜ ବାଟରେ ଚାଲିଗଲେ ପିଲାଟି ଆଈ ପାଖକୁ ଆସେ ।

ଏହିପରି କିଛି ଦିନ ଯିବାରୁ ହାତୀର ସେଠାରେ କଦଳୀ ଖାଇବା ଅଭ୍ୟାସ ହୋଇଗଲା । ସେବାଟେ ଆସିବାବେଳେ ବୁଢ଼ୀ ଦୋକାନ ପାଖରେ ସେ ଠିଆହୋଇ ରହେ । ମାହୁନ୍ତ ପିଠିରେ ବସି ଯେତେ ଚଳାଇଲେ ମଧ୍ୟ ସେ ଆଗକୁ ପାଦ ପକାଏ ନାହିଁ । ହାତୀ ଠିଆ ହେବାର ଦେଖିଲେ ଦିନେଦିନେ ବୁଢ଼ୀ ଅସି କଦଳୀ ବଢ଼ାଇଦିଏ । ହାତୀ ତାକୁ ନେଇ ଖାଏ; କିନ୍ତୁ ସେଠାରୁ ଯାଏ ନାହିଁ । ପିଲା ଆସି କଦଳୀ ନ ଦେବା ପର୍ଯ୍ୟନ୍ତ ଦୋକାନ ଆଗରେ ଠିଆ ହୋଇ ଝୁଲୁଥାଏ । ଶେଷକୁ ବୁଢ଼ୀ ବାଧ୍ୟ ହୋଇ ଯାଇ ନାତୁଣୀକୁ ଡାକିଆଣେ । ନାତୁଣୀ ଆସି ଗୋଟିଏ ଦୁଇଟି କଦଳୀ ଦେଲେ ତାକୁ ଖାଏ, ତା ପରେ ଚାଲିଯାଏ ।

ଦଇବଯୋଗକୁ ସେହି ହାତୀ ଥରେ ପାଗଳ ହେଲା । ଗୋଡ଼ରେ ବନ୍ଧା ହୋଇଥିବା ଲୁହା ଜଞ୍ଜିର ଛିଡ଼ାଇ ଆସି ପଡ଼ାରେ

ବୁଲିଲା । ରାସ୍ତା କଡ଼ରେ ଯେତେ ଘର ପାଇଲା, ସବୁ ମଡ଼ମାଡ଼ ଭାଙ୍ଗିପକାଇଲା । ଘଣ୍ଟାକ ମଧ୍ୟରେ ଚାରିଆଡ଼େ ଚହଳ ପଡ଼ିଗଲା । ଲୋକେ ଭୟରେ ଦୋକାନ ବଜାର ଛାଡ଼ି କିଏ କୁଆଡ଼େ ପଳାଇଗଲେ । ହାତୀ ମନଇଚ୍ଛା ଏଣେତେଣେ ବୁଲିଲା । ସବୁବେଳେ ରାଗରେ ଗର୍ଜନ କରୁଥାଏ, ଆଗରେ ଯାହା ପାଉଥାଏ, ତାକୁ ମାଡ଼ି ଦଳି ଚକଟି ପକାଉଥାଏ ।

ମାହୁନ୍ତ ଆସି ନାନା ଉପାୟ କଲା; କିନ୍ତୁ ତାକୁ ବଶ କରିପାରିଲା ନାହିଁ । ହାତୀ ଲାଗି ବଜାରରେ ଆତଙ୍କ ପଡ଼ିଗଲା । ଲୋକେ ଛତ୍ରଭଙ୍ଗ ହୋଇ ପଳାଇବାକୁ ଲାଗିଲେ ।

କଦଳୀ ବିକୁଥିବା ବୁଢ଼ୀର ନାତୁଣୀଟି ରାସ୍ତା ଉପରେ ଖେଳୁଥିଲା । ହାତୀ ଆସି ତାହା ପାଖରେ ପହଞ୍ଚିଲା । ଲୋକେ ଦୂରରେ ରହି ପିଲାଟିକୁ ଦେଖିଲେ; ହୋ ହା ପାଟି କରି ଉଠିଲେ । ହାତୀ ଆଗରୁ ତାକୁ ଆସି ଉଠାଇନେବାକୁ କାହାରି ସାହସ ହେଲା ନାହିଁ । ପର ପିଲାଟା ଲାଗି ନିଜ ଜୀବନ ଦେବାକୁ କେହି ଆଗଭର ହେଲେ ନାହିଁ । ହାତୀ ପିଲାଟାକୁ ବର୍ତ୍ତମାନ ମାଡ଼ିମକଚି ମାରି ପକାଇବ, ଏହା ଭାବି ସମସ୍ତଙ୍କ ଆଖି ବୁଜି ହୋଇଗଲା ।

ହାତୀ ଯେ ପାଗଳ ହୋଇଛି, ପିଲାଟି ସେ କଥା ଜାଣେ ନାହିଁ । ସେ ହାତୀକୁ ପାଖରେ ଦେଖି ଠିଆ ହୋଇଗଲା । ତା ଥୋଡ଼ପାହାଡ଼କୁ ଆଉଁଷିଦେଇ କହିଲା, "ଆଜି ଏତେବେଳେ କୁଆଡ଼େ ଆସିଲୁ ? ଏଇଲାଗେ ତ କଦଳୀ ମୋ ପାଖରେ ନାହିଁ, ଖାଇବୁ କଅଣ ?"

ହାତୀଟି ସୁନାପିଲା ପରି ତା ପାଖରେ ଠିଆ ହୋଇ ରହିଲା । ତା ମୁଣ୍ଡରେ ଶୁଣ୍ଢ ଲଗାଇଲା, ତା ସାଙ୍ଗରେ ଖେଳିଲା ପରି କେତେ ଭାବଭଙ୍ଗୀ ଦେଖାଇଲା ।

ହାତୀ ଏପର୍ଯ୍ୟନ୍ତ ଦଉଡ଼ୁଥିଲା । ସେଠାରେ ଠିଆ ହୋଇ ରହିବାରୁ ମାହୁନ୍ତ ଭାବିଲା, ହାତୀ ଟିକିଏ ଥକ୍କା ହେଲାଣି, ଯୋଉଛି ଧଇଁ । ଏହା ଭାବି ସେ ପଛଆଡ଼ୁ ଧୀରେଧୀରେ ହାତୀ ପାଖକୁ ଆସିଲା ।

ମାହୁନ୍ତ ଆସୁଛି ବୋଲି ହାତୀ ଜାଣିପାରିଲା । ତୁସ ପିଲାଟିକୁ ନିଜ ଶୁଣ୍ଢରେ ଧରି ଆସ୍ତେ ଉପରକୁ ଉଠାଇନେଲା । ଲୋକେ ଭାବିଲେ ଯେ, ଏଇଥରକ ପିଟି ମାରିପକାଇବ । ମାତ୍ର ସେ ଥିର୍‌କରି ରାସ୍ତା କଡ଼ରେ ପିଲାଟିକୁ ବସାଇଦେଲା; ତା ପରେ ପୂର୍ବପରି ଦଉଡ଼ି ପଳାଇଗଲା ।

ଅଳ୍ପ ଦୂର ଗଲା ପରେ ବୁଢ଼ୀର କଦଳୀ ଦୋକାନଟି ପଡ଼ିଲା । ହାତୀ ଉପରେ ବୁଢ଼ୀ ପଳାଇଯାଇଛି, ଘରଟି ମେଲା ପଡ଼ିଛି । ଛୋଟ କୁଡ଼ିଆ ଖଣ୍ଡେ । ହାତୀ ଗୋଟାଏ ଗୋଡ଼ ପକାଇ ଦେଲେ, ତାହା ଭାଙ୍ଗି ମାଟିରେ ମିଶିଯିବ । ଏହା ଅପେକ୍ଷା ଖୁବ୍ ବଡ଼ବଡ଼ ଘର ସେ ଭାଙ୍ଗିଦେଇ ଆସିଛି, ଏ ଛୁଆର କୁଡ଼ିଆଖଣ୍ଡି ବା କେତେ ?

କିନ୍ତୁ ହାତୀ ସେ ଘର ଭାଙ୍ଗିଲା ନାହିଁ । ମୁହୂର୍ତ୍ତେ ସେଠାରେ ଠିଆ ହୋଇ ସେ ଘର ଆଡ଼କୁ ଚାହିଁଲା । ତା ପଛେପଛେ ମାହୁନ୍ତ ଆସୁଛି ବୋଲି ଯେମିତି ଜାଣିପାରିଲା, ସେମିତି ଆଡ଼େଇ ହୋଇ ଆଗକୁ ଦଉଡ଼ିଲା । ସେ ଘରର ଟିକିଏ ହେଲେ କିଛି କ୍ଷତି କଲା ନାହିଁ ।

—୪—

ରାସ୍ତା କଡ଼ରେ ଗୋଟିଏ ଗୁଡ଼ିଆ ଦୋକାନ ଥାଏ । ହାତୀଟିଏ ଝାଡ଼ବେଳେ ପୋଖରୀରୁ ଗାଧୋଇ ସେହି ବାଟ ଦେଇ

ଯାଏ । ଥରେ ଗୁଡ଼ିଆର କଅଣ ମନ ହେଲା କେଜାଣି, ସେ ଗୋଟାଏ ମୂଆଁ ହାତୀକୁ ବଢ଼ାଇ ଦେଲା । ହାତୀ ଶୁଣ୍ଢରେ ମୂଆଁଟି ନେଇ ଖୁସିରେ ଖାଇଲା ।

ତା ପରଠାରୁ ହାତୀ ପ୍ରତିଦିନ ସେ ଗୁଡ଼ିଆ ଦୋକାନ ଆଗରେ ଠିଆ ହୁଏ । ଗୁଡ଼ିଆର ଆଉ ମୂଆଁ ଦେବାକୁ ଇଚ୍ଛା ନ ଥିଲେ ମଧ୍ୟ ବାଧ୍ୟ ହୋଇ ଦିଏ । ଦୋକାନ ଆଗରେ ହାତୀଟା ଠିଆ ହୋଇଛି, ଗ୍ରାହକ ଆସିବାକୁ ଆଉ ବାଟ ନାହିଁ । ଏଣେ ହାତୀ ମୂଆଁ ନ ପାଇଲେ ନ ଯାଏ; ତେଣୁ ତାକୁ ଶୀଘ୍ର ବିଦା କରିଦେବା ପାଇଁ ସେ ଗୋଟିଏ ମୂଆଁ ବଢ଼ାଇଦିଏ ।

ନାଗୁଆ ଗ୍ରାହକ ଭଳି ହାତୀଟି ପ୍ରତିଦିନ ସେଠାରୁ ଗୋଟିଏ ଲେଖାଏଁ ମୂଆଁ ପାଏ । ଗ୍ରାହକମାନେ ପିନା ପଇସା ଦିଅନ୍ତି ବୋଲି ଦୋକାନୀ ସେମାନଙ୍କୁ ଆଦର କରେ, ଆଗ୍ରହରେ ଖାଇବାକୁ ଦିଏ; ହାତୀ ତ ଆଉ ପଇସା ଦେଉ ନାହିଁ, ଗୁଡ଼ିଆ ପ୍ରତି ଦିନ ବା କାହିଁକି ଏତେ କ୍ଷତି ସହିବ ? କିନ୍ତୁ ନିଜେ ହାତରେ ତ ଭେଟିଛି, ମୂଆଁ ଦେବା ଆରମ୍ଭ କରିଛି, ଆଉ ନ ଦେଇ ଯିବ କୁଆଡ଼େ ?

ଦଶ ପନ୍ଦର ଦିନ ମୂଆଁ ଦେଲା ପରେ ତେଣିକି ଚିଡ଼ିମିଡ଼ି ହେଲା । ତଥାପି ହାତୀ ମୂଆଁ ନ ପାଇଲେ ସେଠାରୁ ଗଲା ନାହିଁ ।

ଥରେ ଗୁଡ଼ିଆ ଗୋଟାଏ ବୁଦ୍ଧି ପାଞ୍ଚିଲା । ସେ ମୂଆଁ ତିଆରି କରି ଭିତରେ ଗୁଡ଼ାଏ ଲଙ୍କାମରିଚ ଗୁଣ୍ଡ ପୁରାଇ ରଖିଲା । ଉପରକୁ ତାହା ମୋଟେ ଜଣା ପଡ଼ୁ ନ ଥାଏ । ହାତୀ ଆସି ଠିଆ ହେଲାରୁ ସେହି ମୂଆଁଟି ସେ ବଢ଼ାଇଦେଲା । ହାତୀ ଶୁଣ୍ଢରେ ତାକୁ ଧରି ତା ବାଟରେ ଚାଲିଗଲା ।

ପର ଦିନ ପୁଣି ଠିକ୍ ସେହି ସମୟ । ପୂର୍ବ ପରି ହାତୀ ଆସି ଦୋକାନ ଆଗରେ ଠିଆ ହେଲା । ଦୋକାନୀ ଭାବିଥିଲା, ଗତ

ମୁଆଁ ଖାଇ ହାତୀ ଆଉ ଆସିବ ନାହିଁ । ତେଣୁ ସେ ନିଶ୍ଚିନ୍ତ ହୋଇ ରହିଥିଲା । କିନ୍ତୁ ପୁଣି ହାତୀ ଆସି ଠିଆ ହେବାରୁ ସେ ଗୋଟିଏ ମୁଆଁ ଧରି ତା ପାଖକୁ ଆସିଲା । ମୁଆଁଟିକୁ ନେବା ପାଇଁ ହାତୀ ମଧ୍ୟ ଦୋକାନ ପାଖକୁ ଲାଗିଆସି ଶୁଣ୍ଢଟି ବଢ଼ାଇ ଦେଲା ।

ସେ କିନ୍ତୁ ଅନ୍ୟ ଦିନ ପରି ଗୁଡ଼ିଆ ହାତରୁ ମୁଆଁ ନେଲା ନାହିଁ । ସୁଉଚ୍ଚ କରି ଏତେ ଜୋରରେ ନିଶ୍ୱାସ ମାରିଦେଲା ଯେ, ଗୁଡ଼ିଆ ଗୋଟାସୁଦ୍ଧା ପଙ୍କ କାଦୁଅରେ ଜୁଡ଼ୁବୁଡ଼ୁ ହୋଇଗଲା । କେବଳ ଗୁଡ଼ିଆ ନୁହେଁ, ଦୋକାନରେ ଯେତେ ମିଠେଇ, ଜିଲବି, ରସଗୋଲା ଥିଲା; ସେ ସବୁ ପଙ୍କ କାଦୁଅରେ ବୁଡ଼ିଗଲା । ଗୁଡ଼ିଆ ତ କାବା; ପାଖରେ ଯେଉଁ ଲୋକମାନେ ଠିଆ ହୋଇଥିଲେ, ସେମାନେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲେ । ତା ପରେ ହାତୀଟି ଝୁଲିଝୁଲି ସେଠାରୁ ନିଜ ବାଟରେ ଚାଲିଗଲା ।

ଗୁଡ଼ିଆ ଯେ ଗୁଗ ମିଶା ମୁଆଁ ଦେଇଥିଲା; ମାହୁନ୍ତ ବି ତା ଜାଣେ ନାହିଁ । ସେଦିନ ହାତୀକୁ ଗାଧୋଇ ଦେଲାବେଳେ ହାତୀ ତା ଶୁଣ୍ଢରେ ପୋଖରୀରୁ ଗୁଡ଼ାଏ ପଙ୍କ କାଦୁଅ ଏପରି ଭାବରେ ଆଣିଛି, ତାହା ମଧ୍ୟ ସେ ବୁଝିପାରି ନ ଥିଲା । ଗୁଡ଼ିଆକୁ ଉପଯୁକ୍ତ ଶାସ୍ତି ଦେବ ବୋଲି ହାତୀ ପୋଖରୀରୁ ସଜବାଜ ହୋଇ ଆସିଥିଲା । ଦୋକାନୀ ଓ ଦୋକାନକୁ ପଙ୍କରେ ବୁଡ଼ାଇଦେବାରୁ ତା ଉରମାନ ମେଣ୍ଟିଲା ।

ସମସ୍ତେ ଭାବିଥିଲେ, ହାତୀ ଆଉ ସେ ଦୋକାନ ଆଗରେ ଠିଆ ହେବ ନାହିଁ । କିନ୍ତୁ ଦେଖାଗଲା, ପର ଦିନ ଠିକ୍ ସମୟରେ ହାତୀ ଆସି ପୁଣି ଠିଆ ହେଲା । ଗୁଡ଼ିଆ ସୁନାପିଲା ପରି ମୁଆଁଟିଏ

ବଢ଼ାଇଦେବାରୁ ସେ ତାହା ଧରି ଗ୍ରହଣକଲା । ଏଣିକି ପ୍ରତିଦିନ ଗୁଡ଼ିଆ ମୁଆଁ ହିଏ; କିନ୍ତୁ କେବେହେଲେ ଆଉ ଲଙ୍କାମରିଚ ଗୁଣ୍ଡ ଦେବାକୁ ମନ କରେ ନାହିଁ । ସେହି ଥରକରୁ ସେ ବେଶ୍ ଶିକ୍ଷା ପାଇଯାଇଛି ।



ରଥ, ସ୍ନାନଯାତ୍ରା, ଝୁଲଣ ପ୍ରଭୃତି ପର୍ବ ସମୟରେ ପୁରୀରେ ବହୁତ ଯାତ୍ରୀ ହୁଅନ୍ତି । ସେମାନେ ମନ୍ଦିର ଭିତରକୁ ଠାକୁର ଦର୍ଶନକୁ ଗଲାବେଳେ ବାଟରେ ମାହୁନ୍ତ ହାତୀକୁ ଧରି ଠିଆ ହୋଇଥାଏ । ଲୋକଙ୍କୁ ଦେଖି ହାତୀ ଶୁଣ୍ଢଟି ତାଙ୍କ ଆଡ଼କୁ ଲମ୍ବାଇଦିଏ । ଯାତ୍ରୀମାନେ ପଇସା, ଅଣି, ଦୋଅଣି ସେ ଶୁଣ୍ଢରେ ଥୋଇଦିଅନ୍ତି । ହାତୀ ଶୁଣ୍ଢଟି ଉପରକୁ ଟେକି ସେ ପଇସା ମାହୁନ୍ତ ହାତକୁ ବଢ଼ାଇଦିଏ । ଯାତ୍ରା ସମୟରେ ହାତୀ ଯୋଗେ ମାହୁନ୍ତର ବେଶ୍ ଦୁଇପଇସା ରୋଜଗାର ହୁଏ ।

କିଏ ପଇସା ଦେବ, କିଏ ପଇସା ନ ଦେବ, ହାତୀ ମଣିଷ ଦେଖି ସେ କଥା ବୁଝିପାରେ । ପୁରୀର ଲୋକେ, ମନ୍ଦିରର ପଣ୍ଡା ପଡ଼ିହାରୀ ଯେ ପଇସା ଦେବେ ନାହିଁ, ଏହା ତାକୁ ଜଣାଥାଏ; ତେଣୁ ସେଭଳି ଲୋକଙ୍କୁ ଦେଖିଲେ, ସେ ଶୁଣ୍ଢ ବଢ଼ାଏ ନାହିଁ, ତାଙ୍କୁ ବାଟ ଛୁଡ଼ିଦିଏ । ସେ ଭଲ କରି ଜାଣେ ଯେ, ପିଲା ଏବଂ ସ୍ତ୍ରୀ ଲୋକ ବିଶେଷତଃ ବୁଢ଼ୀମାନେ ନିଶ୍ଚୟ ପଇସା ଦେବେ । ପଶ୍ଚିମା ଯାତ୍ରୀଙ୍କଠାରୁ ବେଶି ପଇସା ମିଳିବ—ଏହା ବୁଝିପାରି ସେ ତାଙ୍କ ପାଖରେ ବହୁତ ଅଳି କରେ । ତାଙ୍କ ଦେହରେ ଶୁଣ୍ଢ ବୁଲାଏ, କାନ୍ଧ ଉପରେ ଶୁଣ୍ଢ ରଖେ, ନ ହେଲେ ଆଶୀର୍ବାଦ କଲା ଭଳି ମୁଣ୍ଡ ଉପରେ ଶୁଣ୍ଢ

ଲଭ ହଏ । ତାହାର ଏପରି ବ୍ୟବହାର ଦେଖି ଲୋକେ ଖୁସିରେ ପଇସା ଦିଅନ୍ତି ।

ଥରେ ଜଣେ ବଙ୍ଗାଳୀ ଭଦ୍ରଲୋକ ମନ୍ଦିର ମଧ୍ୟକୁ ଯାଉଥିଲେ । ସାଙ୍ଗରେ ତାଙ୍କର ପିଲାଏ ଥାଆନ୍ତି । ସାନ ଝିଅଟି ହାତୀକୁ ଦେଖିବା ପାଇଁ ଟିକଏ ସମସ୍ତ ବାଟରେ ଠିଆ ହେଲା । ବାଧ୍ୟ ହୋଇ ବାବୁ ଏବଂ ଅନ୍ୟ ପିଲାମାନେ ଠିଆ ହେଲେ । ଝିଅଟି ଦେଖିଲା ଯେ, ଲୋକେ ହାତୀ ଶୁଣ୍ଢରେ ପଇସା ଦେଉଛନ୍ତି । ତାହାର ମଧ୍ୟ ପଇସା ଦେବାକୁ ମନ ହେଲା । ଆଗରୁ ସେ ହାତରେ ଗୋଟିଏ ସୁଲକ୍ଷ ଧରିଥିଲା । ସେହି ସୁଲକ୍ଷଟି ହାତୀ ଶୁଣ୍ଢରେ ଥୋଇଦେବାକୁ ଗଲାବେଳକୁ ଭଦ୍ରଲୋକ ତା ହାତ ଧରି ଅଟକାଇ ଦେଲେ । ସୁଲକ୍ଷଟିକୁ ତା ହାତରୁ ଛଡ଼ାଇ ନେଲେ, ପକେଟରୁ ପଇସାଟିଏ ବାହାର କରି ଝିଅ ହାତରେ ଦେଲେ । ହାତୀ ଠିଆ ହୋଇ ସବୁ ଦେଖୁଥାଏ । ଝିଅ ତା ଶୁଣ୍ଢରେ ପଇସାଟି ଥୋଇ ଦେଇ ଆଗକୁ ଚାଲିଗଲା । ହାତୀ ମଧ୍ୟ ବାଟରୁ ଟିକଏ ମୁହଁ ଆଡ଼େଇ ଦେବାରୁ ଅନ୍ୟ ପିଲାମାନେ ଆଗକୁ ଗଲେ । ଭଦ୍ରଲୋକ ସବା ପଛରେ ରହିଥାଆନ୍ତି । ସେ ସେହି ବାଟ ଦେଇ ଗଲାବେଳକୁ ହାତୀ ଧିର୍ କରି ଶୁଣ୍ଢଟି ତାଙ୍କ ପାଖକୁ ବଢ଼ାଇଦେଲା । ପିନ୍ଧା ଲୁଗାର କୁଞ୍ଚକୁ ଧରି ଏପରି କୌଶଳରେ ଟାଣିଦେଲା ଯେ, ସମୁଦାୟ ଲୁଗାଟି ତା ଶୁଣ୍ଢରେ ରହିଗଲା; ଭଦ୍ରଲୋକ ଅଦଭୂତ ଲଙ୍ଗଳା ହୋଇପଡ଼ିଲେ । ଅଣ୍ଟାରେ ଯେଉଁ ଟଙ୍କା ପଇସା ଖୋସିଥିଲେ, ତାହା ଝଣଝଣ ହୋଇ ତଳେ ପଡ଼ିଗଲା । ସେଠାରେ ଯେଉଁ ଯାତ୍ରୀମାନେ ଠୁଳ ହୋଇଥିଲେ, ସେମାନେ ଠୋ ଠୋ ହସିଉଠିଲେ । ଲଜ୍ଜାରେ ଭଦ୍ରଲୋକଙ୍କ ମୁହଁ ତଳକୁ ହୋଇଗଲା । ପରେ ଅବଶ୍ୟ ମାହୁନ୍ତ ହାତୀ ମୁଣ୍ଡରେ

ଦୁଇଟି ଥାପଡ଼ ମାରି ବୁଝାଇଦେବାରୁ ସେ ଲୁଗା ଖଣ୍ଡି ଭଦ୍ରଲୋକଙ୍କ ଉପରକୁ ପକାଇଦେଲା । ସେ ତାହା ପିନ୍ଧିଲେ ।

ଯେଉଁଠାରେ ଲୋକ ଭିଡ଼, ସେଠାରେ ଜାମା ପକେଟରୁ; ଚୋରମାନେ ଟଙ୍କା ପଇସା ଚୋରାଇ ନିଅନ୍ତି; ପକେଟ କଣାକରି ମଧ୍ୟ ନେଇଯାଆନ୍ତି—ଭଦ୍ରଲୋକ ଏ କଥା ଜାଣନ୍ତି । ତେଣୁ ସେ ଅଳ୍ପ କିଛି ପଇସା ପକେଟରେ ରଖି ଆଉ ସବୁ ଅଣ୍ଟାରେ ଖୋସି ଥିଲେ । ହାତୀ ତାହା କିପରି ଜାଣିପାରିଲା । ଭଦ୍ରଲୋକ ପୁଅକୁଟି ଦେଇଯାଇ ପଇସାଟିଏ ଦେବାରୁ, ତାଙ୍କୁ ଅପଦସ୍ଥ କରିବା ପାଇଁ ଏପରି କୌଶଳ କଲା ।

—୭—

ଜଣେ ବଡ଼ ଜମିଦାର ଗୋଟିଏ ହାତୀ ପୋଷିଥିଲେ । ମାହୁନ୍ତ ଥିଲେ ମଧ୍ୟ ଜମିଦାର ନିଜେ ହାତୀକୁ ଖୁଆଇ ଦିଅନ୍ତି । ତା ଦେହ ଆଉଁଷି ଦିଅନ୍ତି; ତାହାର ସୁବିଧା ଅସୁବିଧା ବୁଝନ୍ତି ।

ଅନ୍ତତଃ ଖରାବେଳେ ଥରେ ଜମିଦାର ନିଜେ ହାତୀକୁ ନ ଖୁଆଇ ନ ଦେଲେ ତାଙ୍କ ମନ ବୋଧ ହୁଏ ନାହିଁ କି ହାତୀ ବି ଖୁସି ହୁଏ ନାହିଁ । ମାହୁନ୍ତ ଯେତେ ଖାଇବାକୁ ଦେଇଥିଲେ ମଧ୍ୟ, ଜମିଦାରଙ୍କ ହାତରୁ କିଛି ଖାଇବା ପାଇଁ ସେ ରହିରହି ରହିଥାଏ । ବିଳମ୍ବ ହେଲେ ଗର୍ଜନ କରେ, ଗୋଡ଼ ଓ ଶୁଣ୍ଢ ବାଡ଼ାଏ । ସେଥିରେ କିଛି ନ ହେଲେ ଜଞ୍ଜିର ଛିଣ୍ଡାଇ ଆସି ଜମିଦାରଙ୍କ ପାଖରେ ପହଞ୍ଚିଯାଏ । ଜମିଦାର ନିଜ ଦୋଷ ବୁଝିପାରନ୍ତି, ହାତୀକୁ ବୋଧଶୋଧ କରି ଖାଇବାକୁ ଦିଅନ୍ତି ।

ଥରେ ଜମିଦାର କେତେକ ସାଙ୍ଗସାଥୀ ଓ ବନ୍ଧୁ ବାନ୍ଧବଙ୍କୁ ଧରି ବଣଭୋଜି କରିବାକୁ ଗଲେ । ହାତୀ ଉପରେ ଚାଉଳ, ଡାଲି, ପରିବା, ହାଣ୍ଡି ପ୍ରଭୃତି ଲଦାହୋଇ ଗଲା । ନିବିଡ଼ ବଣ

ଭିତରେ ସମସ୍ତେ ମିଳମିଶି ଭୋଷାଇ କଲେ । ମାହୁନ୍ତ ହାତୀକୁ ବଣଭିତରକୁ ନେଇ ବହୁତ ଡାଳପତ୍ର ଖୁଆଇଲା । କେତେକ ପିଠିରେ ଲଦି ଆଣିଲା ।

ବାବୁମାନଙ୍କର ଭୋଷାଇ ସରୁସରୁ ଅନେକ ବିଳମ୍ବ ହେଲା । ହାତୀ ପେଟ ପୂରାଇ ଖାଇ ଆସିଥିଲା; ତଥାପି ଜମିଦାର ଖୁଆଇ ଦେବାର ସମୟ ହେବାରୁ ଆସି ତାଙ୍କ ପାଖରେ ଠିଆ ହେଲା । ସେ ତ ଭୋଷାଇ କରିବାରେ ବ୍ୟସ୍ତ । ବହୁତ ବିଳମ୍ବ ହେଲାଣି, ଭୋକରେ ବାବୁମାନଙ୍କ ପେଟ ଜଳିଲାଣି । ଏତେବେଳେ ଆଉ ହାତୀ କଥା ବୁଝିବାକୁ ତର କାହିଁ ? ହାତୀ ପାଖକୁ ଆସିବାରୁ ଜମିଦାର ତା ମୁହଁରେ ହାତ ମାରି ବୁଝାଇଦେଲେ, "ବାବାଟା ପର, ଯା, ମୋ କାମ ସରୁ ତୋତେ ଖୁଆଇ ଦେବି ।"

ହାତୀଟି ଏହି କଥାରେ ବୋଧ ହୋଇ ଫେରିଗଲା ।

ପୁଣି ଘଣ୍ଟାଏ ସମୟ ଗଲା, ଜମିଦାରଙ୍କର ଆଉ ହାତୀ କଥା ମନେ ନାହିଁ । ଭୋଷାଇ ସାରି ସମସ୍ତେ ଝରଣାକୁ ଗାଧୋଇବାକୁ ଗଲେ । ବହୁ ସମୟ ପହଁରାପହଁରି କରି ଗାଧୋଇଲେ । ହାତୀ ଭୋଜିଘର ପାଖରେ ଜମିଦାରଙ୍କୁ ନ ଦେଖି ସେଠାକୁ ଗଲା । ସେଠାରେ ମଧ୍ୟ ଜମିଦାରଙ୍କ ବେକ ଉପରେ ଶୁଣ୍ଢ ରଖି ପିଲାଙ୍କ ଭଳି କେତେ ଅଳି କଲା ।

ଜମିଦାର ପୁଣି ବୋଧ ଦେଇ କହିଲେ, "ଯା, ମୁଁ ଗାଧୋଇ ସାରି ଯାଇ କି ତୋତେ ଖାଇବାକୁ ଦେବି ।"

ସେଥର ମଧ୍ୟ ହାତୀ ବୋଧ ହୋଇ ଫେରିଆସିଲା । ବାବୁମାନେ ଗାଧୁଆପାଧୁଆ ସାରି ଭୋଜିଘର ଜାଗାକୁ ଆସିଲେ । ସମସ୍ତେ ଖାଇ ବସିଲେ । ନିଜେ ଜମିଦାର ସେମାନଙ୍କ ପତରରେ ଭାତ ତରକାରି ପରଷିଲେ ।

ସେତିକିବେଳେ ପୁଣି ହାତୀ ତାଙ୍କ ପାଖକୁ ଆସିଲା । ଏଥରକ ଜମିଦାର ଟିକିଏ ବିରକ୍ତ ହୋଇ ଉଠିଲେ । ହାତରେ ଧରିଥିବା କଦଳୀଟା ତା ଶୁଣ୍ଢରେ ବାଡ଼େଇଦେଇ କହିଲେ— 'ଖା, କେତେ ଖାଇବୁ ।'

ଖାଇବସିଥିବା ବନ୍ଧୁ ବାନ୍ଧବମାନେ ହୋ ହୋ ହୋଇ ହସିଉଠିଲେ ।

ହାତୀଟି ବୋଧହୁଏ ଅପମାନ ବୋଧ କଲା । ଧିର ହୋଇ ସେ ସେଠାରୁ ଚାଲିଗଲା । ପାଖରେ ଥିବା ଗୋଟିଏ ଗଛଡାଳରେ ବିରୁଡ଼ି ବସା କରିଥିଲେ । ହାତୀ ସେହି ଡାଳଟି ଶୁଣ୍ଢଦ୍ୱାରା ମୂଳରୁ ଭାଙ୍ଗି ଆଣିଲା । ଉପରକୁ ଶୁଣ୍ଢ ଟେକି ପୁଣି ଆସି ଖାଇବା ସ୍ଥାନରେ ପହଞ୍ଚିଲା ।

ଜମିଦାର କେତେକ ପତରରେ ଝୋଳ ଦେଇ ଅଣ୍ଟା ସିଧା କରିବାକୁ ଠିଆ ହେଉଥିଲେ । ସେତିକିବେଳେ ପୁଷ୍ପବୃଷ୍ଟି କଲା ଭଳି ହାତୀ ସେ ଡାଳଟିକୁ ତାଙ୍କ ମୁଣ୍ଡ ଉପରେ ଝାଡ଼ିଦେଲା । ଜମିଦାରଙ୍କ ମୁହଁ ଓ ଦେହରେ ବିରୁଡ଼ି ଲେସି ହୋଇଗଲେ । ଏପରି ଭାବରେ କାମୁଡ଼ି ପକାଇଲେ ଯେ, ଅନ୍ୟ ଉପାୟ ନ ପାଇ ଜମିଦାର ଦଉଡ଼ି ଯାଇ ପୁଣି ଝରଣା ପାଣିରେ ବୁଡ଼ିପଡ଼ିଲେ ।

ଥରକୁ ଥର ପାଣିରେ ବୁଡ଼ିଲେ ମଧ୍ୟ କେତେଗୁଡ଼ାଏ ବିରୁଡ଼ି ପିଠିରେ କି ମୁହଁରୁ ଛାଡ଼ିଲେ ନାହିଁ; ସେହିପରି କାମୁଡ଼ି ଧରିଥାଆନ୍ତି । ହାତୀ ଝରଣା ପାଖକୁ ଯାଇ ଏ ଦୃଶ୍ୟ ଦେଖିଲା । ତା ମନ ବଦଳିଗଲା । ସେ ଶୁଣ୍ଢରେ ପାଣି ନେଇ ଏତେ ଜୋରରେ ତାଙ୍କ ପିଠିକୁ ଫିଙ୍ଗିଲା ଯେ, ବିରୁଡ଼ିଯାକ ସେ ପାଣି ମାଡ଼ରେ ଖସିପଡ଼ିଲେ । କେତେବେଳ ପରେ ଜମିଦାର ଆଶ୍ୱସ୍ତ

ହେଲେ । ହାତୀ ତାଙ୍କୁ ଶୁଣ୍ଢରେ ଉଠାଇ ପିଠିଉପରେ ବସାଇଲା; ଖାଇବା ସ୍ଥାନରେ ଆଣି ପହଞ୍ଚାଇଦେଲା । ସେତେବେଳକୁ ବୋଧହୁଏ ଖାଉନ୍ଦ ଓ ହାତୀ ମଧ୍ୟରେ ମନେମନେ ସନ୍ଧି ହୋଇଗଲାଣି ।

—୭—

ବଣରେ ଗୋଟାଏ ବାଘ ମାତି ବହୁତ ମଣିଷ ଖାଇଲା । ଆଖପାଖ ଗାଁରେ ଚହଳ ପଡ଼ିଗଲା । ଦିନ ଦୁଇପହରରେ ବି ଲୋକେ ବାଘ ଭୟରେ କବାଟ କିଳି ଘରଭିତରେ ଲୁଚିଲେ ।

ଶିକାରୀମାନେ ଏ ଖବର ପାଇଲେ । ହାତୀ ପିଠିରେ ବସି ବଣକୁ ଶିକାର କରିବାକୁ ଗଲେ ।

ହାତୀଟି ମଧ୍ୟ ବାଘ ଶିକାର କରିବାରେ ଓସ୍ତାଦ୍ । ବହୁତ ଥର ସେ ବାଘ ଶିକାରରେ ବଣକୁ ଯାଇଛି । କେତେ ବାଘ ମରିବା ନିଜେ ଦେଖିଛି, କେତେ ଥର ବାଘ କାମୁଡ଼ା ବି ସହିଛି ।

ସନ୍ଧ୍ୟା ସମୟରୁ ଶିକାରୀମାନେ ଯାଇ ବଣରେ ଲୁକି ରହିଲେ । ଦୁଇ ଜଣ ଶିକାରୀ ପାଖରେ ଥିବା ଗୋଟିଏ ଉଚ୍ଚ ଗଛରେ ମଞ୍ଚା ବାନ୍ଧି ତା ଉପରେ ବସିଲେ । ମାହୁନ୍ତ ଓ ଆଉ କେତେଜଣ ଲୋକ ହାତୀ ପିଠରେ ବସି ଅନ୍ଧାରୁଆ ସ୍ଥାନରେ ଲୁଚିଲେ । ପଦା ସ୍ଥାନରେ ଗୋଟିଏ ବଡ଼ ମଇଁଷି ବାନ୍ଧି ଦିଆଗଲା । ବାଘ ଆସି ମଇଁଷିକୁ ଖାଇଲାବେଳେ ମଞ୍ଚା ଉପରୁ ହେଉ ବା ହାତୀ ଉପରୁ ହେଉ ଗୁଳି କରିବାକୁ ହେବ ।

ବାଘ କିନ୍ତୁ ମହାଧୂର୍ତ୍ତ । ଏପରି ଅବସ୍ଥାରେ ବଣରେ ମଇଁଷି ବନ୍ଧା ହେବା ଦେଖି, ବୋଧହୁଏ ସେ ସବୁକଥା ଜାଣିଗଲା । ସେ ପୁଣି ମଣିଷଖିଆ ବାଘ । ପାଖଆଖରେ ମଣିଷ ବାସନା ପାଉଛି; ମଇଁଷିକୁ ଖାଇବାକୁ ବା କାହିଁକି ଆସିବ ? ଶିକାରୀ-

ମାନେ ମଞ୍ଚିଷି ଆଡ଼କୁ ଲକ୍ଷ୍ୟ ରଖିଥିବା ବେଳେ, ସେ ବଣ ଭିତରେ ବୁଲି ମଣିଷଙ୍କୁ ଖୋଜିଲା ।

ହଠାତ୍ ପଛପଟୁ ଆସି ବାଘ ହାଓ୍ଦା ଉପରକୁ କୁଦିପଡ଼ିଲା । ହାଓ୍ଦାଟା ଖୁବ୍ ଉଚ୍ଚ । ବାଘର ଦେହଟା ମଧ୍ୟ ବେଶି ଭାରି । ସେ ଏକାଥରକେ ହାତୀ ପିଠିଉପରକୁ ଉଠି ଯାଇପାରିଲା ନାହିଁ । ହାତୀର ଲାଙ୍ଗୁଳ କାମୁଡ଼ି ଧରି ଓହଳି ରହିଲା । ପଛଆଡ଼ୁ ବାଘ ଆକ୍ରମଣ କରିବାର ଜାଣିପାରି ହାତୀ ଅଥୟ ହୋଇଉଠିଲା ।

ହାତୀ ଉପରେ ଥିବା ଶିକାରୀମାନେ ପ୍ରମାଦ ଗଣିଲେ । ତଳରେ ଯେଉଁମାନେ ବସିଥିଲେ, ସେମାନେ ବାଘ ଦେଖିଲେ; କିନ୍ତୁ ବନ୍ଧୁକ ମାରିପାରିଲେ ନାହିଁ । ବାଘକୁ ମାରୁମାରୁ ହାତୀ ଦେହରେ ଗୁଳି ବାଜିବା ଅସମ୍ଭବ ନୁହେଁ ।

ହାତୀର ଲାଞ୍ଜଟା ଛିଡ଼ିପିବା ଉପରେ । ସେ ଶୁଣ୍ଢ଼ାଟା ପଛକୁ ବଢ଼ାଉଛି; ମାତ୍ର ପାଉ ନାହିଁ । ସୁବିଧା ହେଲେ ବାଘକୁ ଗୋଡ଼ରେ ଦଳି ଦିଅନ୍ତା, ତାହା ମଧ୍ୟ ଅସମ୍ଭବ । ହାତୀ ଅନ୍ୟ କିଛି ଉପାୟ ନ ପାଇ ଖୁବ୍ ଜୋରରେ ଦଉଡ଼ିଲା । ବାଘ ସେହିପରି ପଛରେ ଓହଳିଥାଏ ।

ହାତୀ ଦଉଡ଼ିବା ବେଳେ, ତା ପିଠିରେ ବସିଥିବା ଲୋକମାନେ ବାଟରେ ଗଛର ଡାଳ ଧରି ଅଟକିଗଲେ । ହାତୀ କେବଳ ଦଉଡ଼ୁଥାଏ ।

ବଣକୁ ଆସିଲାବେଳେ ହାତୀ ଗୋଟିଏ ନଈ ପାରି ହୋଇ ଆସିଥିଲା । ସେ ସିଧା ସେହି ନଈ ଆଡ଼କୁ ଦଉଡ଼ିଲା । ନଈ ମଧ୍ୟ ବେଶି ଦୂରରେ ନ ଥିଲା । ହାତୀ ଯାଇ ସେହି ପାଣିରେ ପଡ଼ି ବାଘକୁ ଭଲରୂପେ 'ଡୁବ' ଦେଲା । ବାଘଟା ଅଣନିଃଶ୍ୱାସୀ ହୋଇ ହାତୀ ଲାଞ୍ଜ ଛାଡ଼ିଦେବା ସଙ୍ଗେ ସଙ୍ଗେ ହାତୀ ବୁଲିପଡ଼ିଲା ।

ଶୁଣ୍ଢରେ ବାଘ ବେକକୁ ଜାବୁଡ଼ି ଧରି ପାଣିରେ ବାରମ୍ବାର ବୁଡ଼ାଇଲା ଓ ଉଠାଇଲା । ବାଘ ବିଚରା ଏ ଦଶା ହେବ ବୋଲି କେବେ କଳ୍ପନା କରି ନ ଥିଲା । ପାଣିରେ ବୁଡ଼ବୁଡ଼ି ସେ ଦରମଲା ହୋଇଗଲା; ତା ପୂର୍ବ ତେଜ କମିଗଲା । ତଥାପି ହାତୀ ତାକୁ ଛାଡ଼ୁ ନ ଥାଏ । ସେ ମଧ୍ୟ ହାତୀ ପାଖରୁ ଖସି ପଳାଇଯିବାକୁ ନାନା କଳ କଉଶଳ କରୁଥାଏ; ପାରୁ ନ ଥାଏ ।

କିଛି ସମୟ ପରେ ହାତୀ ବାଘକୁ ଘୋଷାରି ଘୋଷାରି ପୁଣି କୂଳକୁ ଆଣିଲା । ଶୁଖିଲାକୁ ଆସି ବାଘ ଟିକିଏ ଦେହଝାଡ଼ି ଉଠିବାକୁ ଚେଷ୍ଟା କରୁଥିଲା; କିନ୍ତୁ ହାତୀ ତା ଉପରେ ଆଗ ଦୁଇ ଗୋଡ଼ ରଖି ଏପରି ଭାବରେ ଚାପିଦେଲା ଯେ, ବାଘର ଅନ୍ତବୁଜୁଳା ବାହାରିପଡ଼ିଲା ।



ଆମ ଦେଶରେ ହାତୀ ଧରିବା ପାଇଁ ନାନା କୌଶଳ କରାଯାଏ । ଶିକାରୀମାନେ ବଣଭିତରେ ଖୁବ୍ ପ୍ରଶସ୍ତ ଜାଗାରେ ଆରକଡ଼ରେ ବଡ଼ବଡ଼ ଶାଳ ଖୁଣ୍ଟ ପୋତି 'ଗେରଦା' କରନ୍ତି । ତାହାର ତିନି ପାଖ ନିବିଡ଼ ଭାବରେ ବୁଜାଥାଆନ୍ତି । ଯେଉଁ ପାଖ ଖୋଲାଥାଏ, ସେ ପାଖରେ ଉପରୁ ଗୋଟାଏ ମଜଭୁତ କାଠ କବାଟ ଝୁଲୁଥାଏ । ଶହଶହ ଲୋକ ରୁଣ୍ଡ ହୋଇ ବହୁ ଦୂର ଜଙ୍ଗଲରୁ ହାତୀପଲଙ୍କୁ ଘଉଡ଼ାନ୍ତି । ନାନା ପ୍ରକାର ବାଜା ବଜେଇ, ନିଆଁ ହୁଳା ଜାଳି, ପାଟିକରି ସେମାନେ ସେହି ଗେରଦା ଆଡ଼କୁ ମାଡ଼ିଆସନ୍ତି । ଏହା ଦିନ ଅଧିକର କାମ ନୁହେଁ; ମାସ ମାସ ଧରି ଏହିପରି ଚାଲିଥାଏ । ହାତୀପଲ ଚଉଆଡ଼ୁ ନାନା ଶବ୍ଦ ଶୁଣି, ନିଆଁ ହୁଳା ଦେଖି ଗେରଦା ଆଡ଼କୁ ଚାଲିଆସନ୍ତି । କେତେକ ବାଟରେ ସୁବିଧା ପାଇ ଖସି ପଳାଇ

ଯାଆନ୍ତି; କେତେକ ଆସି ଗେରଦା ଭିତରେ ପଶନ୍ତି । ଏହି ସମୟରେ କୌଶଳ କରି ଉପରୁ କବାଟ ପକାଇ ଦିଆଯାଏ । ଗେରଦା ଚାରିପାଖ ପୁଣି ଖୁଣ୍ଟ ପୋତି ସବୁ ବାଟ ନକୁଳ ବନ୍ଦ କରି ଦିଆଯାଏ । ଏହାକୁ 'ହାତୀ ଖେଦା' କହନ୍ତି ।

ଏହି ଖେଦା ଭିତରେ ହାତୀ ଋହି ବାହାରକୁ ଯିବାର ବାଟ ଖୋଜେ । ସେତେବେଳେ ସେ ଅତି ଭୀଷଣ ହୋଇ ଉଠେ; ମାତ୍ର ଦଶ ବାର ଦିନଯାଏ ତା ଭିତରେ କିଛି ଖାଇବାକୁ ନ ପାଇ ପଡ଼ିରହିଲେ, ତା ତେଜ କମିଯାଏ । ଦୁର୍ବଳ ହୋଇପଡ଼ିଲେ ଲୋକେ ପୋଷାହାତୀ ପିଠିରେ ବସି ଖେଦା ଭିତରକୁ ଯାଆନ୍ତି । ସେହି ପୋଷା ହାତୀଦ୍ୱାରା ସେମାନଙ୍କ ଗୋଡ଼ରେ ଲୁହାଜଞ୍ଜିର ବାନ୍ଧି ଦିଆଯାଏ । ଏହାପରି ବନ୍ଧନଦଶାରେ କେତେଦିନ ପଡ଼ି ରହିଲେ, ଲୋକେ ସେମାନଙ୍କୁ କିଛି କିଛି ଖାଇବାକୁ ଦିଅନ୍ତି ଓ ପୋଷା ମନାନ୍ତି ।

ଗୋଟାଏ ଗୋଟାଏ ହାତୀ ଏପରି ଟାଣ ଥାଆନ୍ତି ଯେ, ସେମାନେ କିଛି ନ ଖାଇ ମରିଯାଆନ୍ତି ପଛକେ; ମାତ୍ର ପୋଷା ମାନନ୍ତି ନାହିଁ । ମୃତ୍ୟୁ ହେବା ପର୍ଯ୍ୟନ୍ତ ସେମାନଙ୍କ ତେଜ କମି ନ ଥାଏ ।

ଥରେ ଖେଦାରେ ପାଞ୍ଚଗୋଟା ହାତୀ ପଡ଼ିଥିଲେ । ସେମାନଙ୍କ ଭିତରେ ଗୋଟାଏ ମସ୍ତବଡ଼ ଦନ୍ତାହାତୀ ଥିଲା । ସେ ଗେରଦା ଭାଙ୍ଗି ପଳାଇଯିବାକୁ ବହୁତ ଚେଷ୍ଟା କଲା; ମାତ୍ର ପାରିଲା ନାହିଁ । ତଥାପି ସେ ମୁହୂର୍ତ୍ତେ ବିଶ୍ରାମ ନିଏ ନାହିଁ; ସବୁବେଳେ ଶାଳ ଝୁଣ୍ଟକୁ ଶୁଣ୍ଢରେ ନ ହେଲେ ପଛ ଗୋଡ଼ରେ ବାଡ଼େଇ ଉପାଡ଼ି ପକାଇବାକୁ ଚେଷ୍ଟା କରୁଥାଏ ।

ଦଶଦିନ କାଳ ସେ ଏହିପରି କେତେ ଯୁଦ୍ଧ କଲା । ଅନ୍ୟ ହାତୀ ଖାଇବାକୁ ନ ପାଇ ଦୁର୍ବଳ ହୋଇ ତଳେ ପଡ଼ିଗଲେ । ସେ ଅବଶ୍ୟ ଖୁବ୍ ଝଡ଼ିଗଲା; କିନ୍ତୁ ତା ତେଜ କମିଲା ନାହିଁ ।

ତିନିଜଣ ମାହୁନ୍ତ ତିନୋଟି ପୋଷାହାତୀ ପିଠିରେ ବସି ସେ ଖେଦାଭିତରେ ପଶିଲେ । ଗୋଟିଗୋଟି କରି ଅନ୍ୟମାନଙ୍କ ଗୋଡ଼ରେ ଲୁହାଶିକୁଳି ବନ୍ଧାଗଲା; ମାତ୍ର ଦନ୍ତା ପାଖକୁ ଗଲା-ବେଳକୁ ସେ ଅଡ଼ୌ ଥପ୍ପ ହେଲା ନାହିଁ । ତିନୋଟିଯାକ ପୋଷାହାତୀଙ୍କୁ ମାଡ଼ଗୋଡ଼ାଇଲା । ସେମାନଙ୍କ ପିଠିରେ ବସିଥିବା ମାହୁନ୍ତମାନଙ୍କୁ ସେ ମୋଟେ ଖାତିର୍‌ରେ ଆଣିଲା ନାହିଁ । ବୋଧହୁଏ ମନେମନେ ଭାବିଲା, "ଏ ଗୁଡ଼ିକ ଏତେ ସାନ ଜନ୍ତୁ ହୋଇ ମୋତେ ବାନ୍ଧିବାକୁ ଚେଷ୍ଟା କରୁଅଛନ୍ତି ।"

ତା ଶୁଣି ମାଡ଼ରେ ଗୋଟିଏ ପୋଷା ହାତୀ ବେଦମ ହୋଇଗଲା । ମାହୁନ୍ତ ତଳେ ପଡ଼ି ଯାଇଯାଇ ଅଳ୍ପକେ ରକ୍ଷା ପାଇ-ଗଲା । ବହୁତ କଷ୍ଟରେ ସେ ହାତୀର ଗୋଟାଏ ଗୋଡ଼ରେ ଜଞ୍ଜିର ବନ୍ଧାହେଲା; ମାତ୍ର ଅନ୍ୟ ଗୋଡ଼ରେ ବନ୍ଧା ହେଲାବେଳକୁ ସେ କେବଳ କୁଦା ମାରିଲା ।

ହାତୀ ବନ୍ଧା ହୋଇଗଲେଣି, ଆଉ ପଳାଇ ଯାଇପାରିବେ ନାହିଁ—ଏହା ଭାବି ଲୋକେ ଗେଟବାଡ଼ର କବାଟଟା ଖୋଲା ରଖି ଥାଆନ୍ତି । ଦନ୍ତା ତାହା ଦେଖିପାରିଲା । ଏ ସୁଯୋଗ ହରାଇବାର ନୁହେ ଜାଣି, ସେ ତାହାର ବନ୍ଧା ହୋଇଥିବା ଗୋଡ଼ଟାକୁ ଏତେ ଟାଣରେ ଝିଙ୍କିଦେଲା ଯେ, ଲୁହାଜଞ୍ଜିର ଝଣାତ୍‌ଝଣ ହୋଇ ଛିଡ଼ିଗଲା । ଦନ୍ତା ଖେଦାରୁ ବାହାରି ପଳାଇଗଲା ।

କିନ୍ତୁ ସେହି ବଣ ଛାଡ଼ି ସେ ଆଉ କୁଆଡ଼େ ଗଲା ନାହିଁ । କେତେ ଦିନ ବଣରେ ଖାଇପିଇ ସୁସ୍ଥ ସବଳ ହେଲା । ତା ପରେ ଏ ପୋଷାହାତୀ ତିନୋଟିକୁ ମାରିବା ପାଇଁ ସବୁବେଳେ

ଚେଷ୍ଟା କଲା । କେତେ ଥର ତାଙ୍କ ପିଠି ଧରିଲା; କେତେ ଥର ତାଙ୍କ ସହିତ ଲଢ଼ିଲା । ତାକୁ ବଣରୁ ତଡ଼ିଦେବା ପାଇଁ ବହୁତ ଉଦ୍ୟମ କଲା; ତଥାପି ସେ ବଣ ଛାଡ଼ିଲା ନାହିଁ ।

ଥରେ ସୁଯୋଗ ପାଇ ଗୋଟାଏ ପୋଷାହାତୀ ସହିତ ଲଢ଼ିଲା । ସେହିଠାରେ ତାକୁ ଗୁଳି କରି ମାରି ଦିଆଗଲା । ସେ ମଲା ସତ; କିନ୍ତୁ ପୋଷ ହାତୀଟିକୁ ଏପରି ଭାବରେ ଆଘାତ କରିଥିଲା ଯେ, ସେ ମଧ୍ୟ ବେଶି ଦିନ ବଞ୍ଚିଲା ନାହିଁ ।

—୪—

ଏ ପର୍ଯ୍ୟନ୍ତ କେବଳ ଆମ ଦେଶର ହାତୀଙ୍କ କଥା କୁହାଗଲା । ଆଫ୍ରିକାର ହାତୀମାନେ ତ କେବେହେଲେ ପୋଷା ମାନନ୍ତି ନାହିଁ । ସେମାନଙ୍କୁ ଜୀଅନ୍ତା ଧରିବା ମଧ୍ୟ ସହଜ ନୁହେଁ । କେବଳ ଦାନ୍ତ ଓ ହାଡ଼ ପାଇବା ପାଇଁ ଶିକାରୀମାନେ ସେମାନଙ୍କୁ ମାରନ୍ତି । ଆଫ୍ରିକା ବଣର ହାତୀ ମଧ୍ୟ ଆମ ଦେଶର ହାତୀ ପରି ଏତେ ଶାନ୍ତ ନୁହନ୍ତି । ସାମାନ୍ୟ ବିପଦ ଆଶଙ୍କା କଲେ, ସେମାନେ ଅତି ଭୀଷଣ ହୋଇଉଠନ୍ତି । ଯାହାକୁ ଆଗରେ ପାଆନ୍ତି, ତାକୁ ମାଡ଼ିମକଚି ଦଳିଦିଅନ୍ତି । ସେଠାରେ ହାତୀଦଳଙ୍କୁ ବଣର ବାଘ, ସିଂହ ଆଦି ସବୁ ପଶୁ ପ୍ରାଣରେ ଭୟ କରନ୍ତି ।

ଥରେ ଜଣେ ସାହେବ ଆଫ୍ରିକାର ବଣ ଜଙ୍ଗଲରେ ବୁଲୁଥିଲେ । ଜୀବଜନ୍ତୁ ଶିକାର କରିବା ତାଙ୍କର ସେତେ ଇଚ୍ଛା ନୁହେଁ; ବଣର ଭିନ୍ନ ଭିନ୍ନ ଜନ୍ତୁଙ୍କ ଫଟୋ ଉଠାଇବା ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ତେଣୁ ସବୁବେଳେ ଗୋଟିଏ ଫଟୋ ଉଠା କ୍ୟାମେରା ତାଙ୍କ କାନ୍ଧରେ ଝୁଲୁଥାଏ ।

ସେ ହାତୀ ମୁହଁରୁ କିପରି ଉଦ୍ଧାର ପାଇଥିଲେ, ସେହି କଥା ବର୍ଣ୍ଣନା କରି ଲେଖିଅଛନ୍ତି—

"ସିଂହ ତା ଶିକାର ଉପରେ ଝାମ୍ପିପଡ଼ିଲା ବେଳେ ତାହାର ମୁହଁର ଅବସ୍ଥା କଅଣ ହୋଇଥାଏ, ତାର ଗୋଟାଏ ଫଟୋ ଉଠାଇବା ପାଇଁ ମୋର ଇଚ୍ଛା ଥାଏ । ସିଂହର ଦୁଇ ତିନୋଟି ଫଟୋ ଉଠାଇ ସାରିଲିଣି; କିନ୍ତୁ ଏ ଅବସ୍ଥାର ଛବି ଏ ପର୍ଯ୍ୟନ୍ତ ପାଇ ନାହିଁ । ସେଦିନ ସନ୍ଧ୍ୟା ନ ହେଉଣୁ ବଣକୁ ବାହାରି ପଡ଼ିଲି—ଅନ୍ଧାର ହେବା ଆଗରୁ ସୁବିଧା ଜାଗାରେ ବସି ଛବି ଉଠାଇବାର ବ୍ୟବସ୍ଥା କରିବି ।

"ବଣଭିତରେ ଅଳ୍ପ ବାଟ ଯାଇଛି, ମୋତେ ଜଣାଗଲା, ଯେପରି ପ୍ରବଳ ଝଡ଼ ତୋଫାନରେ ବଣଟାଯାକ ମଡ଼ମଡ଼ ଶବ୍ଦ କରି ଭାଙ୍ଗିପଡ଼ୁଛି; ଅଥଚ ଆକାଶ ନିର୍ମଳ, ଟିକିଏ ହେଲେ ପବନ ନାହିଁ । ବଣରେ ଗଛ ମଡ଼ମଡ଼ ହୋଇ ଭାଙ୍ଗିବା ସଙ୍ଗେ ସଙ୍ଗେ ଅତି ଭୟଙ୍କର ଗର୍ଜନ ଶୁଣାଗଲା । ଏହା ଯେ ହାତୀର ଗର୍ଜ୍ଜନ, ତା ବୁଝିବାକୁ ଆଉ ସନ୍ଦେହ ରହିଲା ନାହିଁ । ଟିକିଏ ଆଗକୁ ଯାଇ ଦେଖିଲି, ଅଳ୍ପ କିଛି ଦୂରରେ ଦୁଇଟା ହାତୀଙ୍କର ଭୀଷଣ ଲଢ଼େଇ ଲାଗିଯାଇଛି । ଦୁଇଟା ପ୍ରକାଣ୍ଡ ଦନ୍ତା ହାତୀ—ବୋଧହୁଏ ଦୁଇଟି ଦଳର ଦୁଇ ଦଳପତି । ଦୁହେଁ ସାମନାସାମନି ଠିଆ ହୋଇ ଥାଆନ୍ତି । ଯେ ଯାହାର ଅଳ୍ପ ପଛକୁ ହଟି ଯାଆନ୍ତି । ସେହିଆଡ଼ୁ ଶୁଣ୍ଢ ଟେକି ଖୁବ୍ ଜୋରରେ ମାଡ଼ିଆସି ଗୋଟିଏ ଅନ୍ୟଟି ଦେହରେ ଏପରି ଧକ୍କା ଦିଏ ଯେ, ସତେ ଯେପରି ଖୁବ୍ ଶୀଘ୍ରଗତିରେ ଆସୁଥିବା ଗୋଟାଏ ବଡ଼ ରେଲଗାଡ଼ି ଆଉ ଗୋଟାଏ ରେଲଗାଡି ସାଙ୍ଗରେ ବାଡ଼େଇ ହୋଇଯାଉଛି—ସେହିପରି ଜଣା ଯାଉଥାଏ । ସେହି ମାଡ଼ରେ ପାଖରେ ଯେଉଁ ଗଛ ବୃକ୍ଷ ଥାଏ, ତାହା ମଡ଼ମାଡ଼ ଭାଙ୍ଗିପଡ଼େ । ଥରେ ଥରେ

ଦୁହେଁ ଦୁହିଙ୍କ ଶୁଣ୍ଢକୁ ଛନ୍ଦାଛନ୍ଦ କରି ବାରଚନ୍ଦ ପରି ଗୃହପାଖ ବୁଲିଯାଆନ୍ତ ।

ଏହି ଯୁଦ୍ଧର ଗୋଟିଏ ଫଟୋ ଉଠାଇବାକୁ ମୋର ଘୋର ଇଚ୍ଛା ହେଲା । କ୍ୟାମେରାଟି ସାଙ୍ଗେ ସାଙ୍ଗେ ସଜାଡ଼ି ନେଲି । ଢଗ ଠିକ୍ ଅଛି କି ନାହିଁ, ଦେଖିବା ପାଇଁ ଆଗକୁ ଗୁହିଁଦେଲା ବେଳକୁ ଦେଖିଲି, ସର୍ବନାଶ । ଯୁଦ୍ଧ ତ ଭାଙ୍ଗି ଗଲାଣି, ସେଥିରୁ ଗୋଟିଏ ମହାବଳ ଦନ୍ତା ସାକ୍ଷାତ ଯମ ପରି ମୋର ଆଡ଼କୁ ଦଉଡ଼ୁଛି । ବେଶି ଦୂର ନାହିଁ । ହାତୀ ଆଉ ମୋ ମଧ୍ୟରେ କେବଳ ପନ୍ଦର ହାତ ଯାଏ ତଫାତ୍ । ମୋର ଆଖି ଖୋସି ହୋଇ ପଡ଼ିଲା । ବାଘ ସିଂହଙ୍କ ମୁହଁରୁ କୌଶଳରେ ରକ୍ଷା ମିଳିପାରେ; କିନ୍ତୁ ହାତୀ ଆଗରୁ ରକ୍ଷା ମିଳିବା ସମ୍ଭବ ନୁହେ । ଗଛ ଉପରେ ଚଢ଼ିଲେ ଲୁଚି ହେବ ନାହିଁ; କି ପାଣିରେ ବୁଡ଼ିଲେ ରକ୍ଷା ନାହିଁ ।

ହାତୀ ପାଦତଳେ ଏହି ମୁହୂର୍ତ୍ତରେ ଯେ ପ୍ରାଣଟି ଯିବ, ଏହା ମୁଁ ସ୍ଥିର ଜାଣିନେଲି । ହାତୀ ଯେତେ ବେଗରେ ଆସୁଛି, ଯେପରି ରାଗରେ ତମତମ ହୋଇ ଧାଉଁଛି, ଏକା ମୁଁ କଅଣ, ମୋପରି ଦଶଗଣ୍ଡା ପାଇଲେ ବି ସେ ଦଳି ଛକଟି ଦେବାକୁ ଟିକିଏ କୁଣ୍ଠିତ ହେବ ନାହିଁ । ଭୟରେ ଥରଥର ପୁଣି ଥରେ ଆଗକୁ ଗୁହିଁଲି । ତାପରେ ତଳେ ମୁହଁମାଡ଼ି ଶୋଇପଡ଼ିଲି । ହାତୀ ପାଦତଳେ ତ ନିଶ୍ଚୟ ମରିବି, ତେବେ ସେ ମୃତ୍ୟୁର ବିଭୀଷିକା ଦେଖିବାକୁ ସାହସ ହେଲା ନାହିଁ । ଶୋଇବା ସାଙ୍ଗେ ସାଙ୍ଗେ ଆଖି ଦୁଇଟା ବି ବୁଜି ହୋଇପଡ଼ିଲା ।

ମୋତେ ଜଣାଗଲା, ମୋ ଉପରେ ଯେପରି ଅସରାଏ ମେଘ ବର୍ଷିଲା । ପାଞ୍ଚମିନିଟ ଚୁପ୍‌ଚାପ । ପରେ କାନ ପାଡ଼ି

ଶୁଣିଲି, ହାତୀ ଖୋଜର ଶବ୍ଦ ବହୁତ ଦୂରରେ ଶୁଭୁଛି । ମୁହଁ ଟେକି ଚାହିଁଲି, ହାତୀ ମୋତେ ଟପି କୋଡ଼ିଏ ହାତ ଯାଏ ପଛକୁ ଚାଲି ଗଲାଣି । ଉଠି ବସିଲି । ରକ୍ତରେ ମୋ ମୁଣ୍ଡବାଳଠାରୁ ଆରମ୍ଭ କରି ଲୁଗାପଟା ସବୁ ଓଦା ହୋଇଯାଇଛି । ହାତୀ ଯେଉଁ ବାଟେ ଚାଲିଯାଇଛି, ସେବାଟରେ ତାହେ ଓସାରର ରକ୍ତନଈ ବହିଗଲା ପରି ଜଣାପଡ଼ୁଛି ।

ଯୁଦ୍ଧବେଳେ ଆର ହାତୀର ଦାନ୍ତ ଗଳିଯାଇ ଏହାର ପେଟରେ ଗୋଟାଏ କଣା ହୋଇଯାଇଛି । ସେହି କଣାରୁ ଏଭଳି ରକ୍ତ ବହୁଛି, ସତେ ଅବା ମାଠିଆଏ ପାଣି ଧରି କିଏ ଅଜାଡ଼ି ଦେଉଛି । ମୁଁ ଏତେବେଳ ସରିକି ଜାଣିଲି ଯେ, ମୋତେ ମାରିବା ହାତୀର ଲକ୍ଷ୍ୟ ନ ଥିଲା । ଶତ୍ରୁଠାରୁ ପଛଦୁଆ ଦେଇ ପଳେଇବା ଉଦ୍ଦେଶ୍ୟରେ ସେ ମୋ ଆଡ଼କୁ ଦଉଡ଼ୁଥିଲା । ମୋ ଉପରେ ଦେଇ ସେ ଗଲାବେଳେ ପାଦ ଠିକ୍ ମୋ ଅଣ୍ଟାଠାରୁ ମୁଠିଏ ଦୂରରେ ପଡ଼ିଛି । ତାର ପାଦଟା ଯଦି ସେଠାରେ ନ ପଡ଼ି ମୋ ପିଠି ଉପରେ ପଡ଼ିଥାନ୍ତା, ତେବେ ମୋ ଅବସ୍ଥା ଯେ କିପରି ହୋଇଥାଆନ୍ତା, ତାହା ଜଣାଶୁଣା ।

କେବଳ ଭଗବାନଙ୍କ ଦୟାରୁ ମୁଁ ଏ ଘାଟିରୁ ରକ୍ଷା ପାଇଗଲି—ଏ ବିଶ୍ୱାସ ମୋର ଦୃଢ଼ ହେଲା ।

—୧୦—

ଆଜି ଜଣେ ଶିକାରୀ ଲେଖିଅଛନ୍ତି—ଆମେ ଅବଶ୍ୟ ହାତୀ ଶିକାର କରିବାକୁ ବଣମଧ୍ୟକୁ ଯାଇଥିଲୁଁ । କିନ୍ତୁ ଏପରି

ଗୋଟାଏ ହାତୀଦଳ ହାବୁଡ଼ରେ ପଡ଼ିବୁ, ଏହା କଳ୍ପନା କରି ନ ଥିଲୁ । ଲୋକ ଆସି ଖବର ଦେଲା ଯେ, ସେ ଆଜ ଗୋଟାଏ ହାତୀ ଦେଖିଛି । ହାତୀ ଖୁବ୍ କମ ସମୟରେ ଦଳ ଗୁଡ଼ା ରହନ୍ତି; ତେଣୁ ଆମେ ଜାଣିଗଲୁ ଯେ, ହାତୀଦଳ ଆସି ପାଖ ବଣରେ । ଉପାୟ କଲେ ଅନ୍ତତଃ ଗୋଟାଏ ବା ଦୁଇଟା ମରିଯାଇ ପାରିବେ ।

ସେଦିନ ସନ୍ଧ୍ୟା ହେବାକୁ ଆଉ ବେଶି ବିଳମ୍ବ ନ ଥିଲା । ଆମେ ଗୋଟିଏ ଖୋଲା ସ୍ଥାନରେ ତମ୍ବୁ ପକାଇଲୁ । ତମ୍ବୁର ଚାରିଆଡ଼େ ବହୁ ପରିମାଣରେ କାଠ ଜମାଇ ସେଥିରେ ନିଆଁ ଲଗାଇଦେଲୁ । ନିଆଁ ଦେଖିଲେ କୌଣସି ପଶୁ ପାଖକୁ ଆସିବାକୁ ସାହସ କରିବ ନାହିଁ ।

ତମ୍ବୁଟି ଅପେକ୍ଷାକୃତ ଉଚ୍ଚ ସ୍ଥାନରେ ପଡ଼ିଥାଏ । ସେହିଠାରେ ବସି ଆମେ କେତେ ଜଣ ଚାରିଦିଗକୁ ଲକ୍ଷ୍ୟ କରି ଚାହିଁଲୁ । ଅଳ୍ପ ଦୂରରେ ଗୋଟାଏ ନଈ ବହି ଯାଉଥାଏ । ହାତୀଦଳ ନିଶ୍ଚୟ ସେଠାକୁ ଆସିବେ, ସେ ଆଶା ଆମର ଥିଲା ।

ରାତକୁ ରାତ ରାତି ପ୍ରାୟ ଅଧ ସମୟକୁ ବଣ ଭାଙ୍ଗିପଡ଼ିଲା ପରି ଆମକୁ ଜଣାଗଲା । ହାତୀପଲ ଯେ ଆସିଗଲେ, ତାହା ମୁଁ ଜାଣିପାରିଲି । ତମ୍ବୁର ସବୁ ଲୋକଙ୍କୁ ଉଠାଇ ସାବଧାନ କରାଇ ଦେଲି । ଲୋକେ ସଜବାଜ ହୋଇ ହାତୀ ଆକ୍ରମଣକୁ ଚାହିଁ ରହିଲେ ।

ଗୋଟିଏ ଅତି ବଡ଼ ହାତୀଦଳ ନଈ ବନ୍ଧେବନ୍ଧେ ଚାଲି-ଆସୁଆନ୍ତି । ଆମର ଆଖି ସେହି ଦିଗକୁ ଥାଏ । ସେ ଦଳରେ ଏତେ-ଗୁଡ଼ାଏ ହାତୀ ଥାଆନ୍ତି ଯେ, ସେମାନଙ୍କୁ ଗଣି ହେବ ନାହିଁ । ଶୋଭାଯାତ୍ରା କଲାପରି ତା ପଛକୁ ତା ପଛ ମାଇଲିଏ ବାଟଯାଏ

ଲାଗି ରହୁଥାଆନ୍ତି ? କେତେବେଳେ ଯେ ସେଥିରୁ ଛଅଟି ହାତୀ ଖସି ଆସି ଆମ ତମ୍ବୁଆଡ଼କୁ ମୁହାଁଇଲେଣି,ତାହା ଆମେ ଜାଣିପାରି ନାହୁଁ ।

ଜଣେ ଲୋକ ହଠାତ୍ ଚିତ୍କାର କରି ଉଠିଲା । ସମସ୍ତେ ଯାହାଁ ଦେଖିଲାବେଳକୁ ଆମ ତମ୍ବୁଠାରୁ ପ୍ରାୟ କୋଡ଼ିଏ ହାତ ଦୂରରେ ଛଅଟା ହାତୀ ଆମରି ଆଡ଼କୁ ମୁହାଁଇଛନ୍ତି ।

ଆମ ସାଙ୍ଗରେ ଭାରତୀୟ ପୋଷା ହାତୀ ଦୁଇଟି ଥାଆନ୍ତି । ତମ୍ବୁର ଗୋଟାଏ ପାଖରେ ସେ ଦୁହେଁ ବନ୍ଧା ହୋଇଥାଆନ୍ତି । ଆଗେ ସେମାନଙ୍କୁ ପଦାରେ ବୁଲିବା ପାଇଁ ଛାଡ଼ି ଦେଉଥିଲୁ; ମାତ୍ର ଅଜ ବାନ୍ଧି ରଖିଛୁ । ମାହୁନ୍ତ ଦୁହେଁ କହୁଥିଲେ—ଏ ହାତୀ ଦୁଇଟିକୁ ଛାଡ଼ିଦେଲେ, ଏମାନଙ୍କୁ ବଣୁଆ ହାତୀମାନେ ଶିଖାଇ ବଣ ଭିତରକୁ ନେଇଯିବେ, ନ ହେଲେ ନଷ୍ଟପ୍ରାୟ ମାରି ପକାଇବେ ।

ସମସ୍ତେ ନିଆଁ ଖୁବ୍ ତେଜରେ ଜାଳିଦେଲେ, ଢୋଲ, ଟିଣ ଆଦି ଜୋରରେ ବାଡ଼େଇଲେ, ପାଟିଗୋଳମାଳ କଲେ; ତଥାପି ଏ ହାତୀ ଛଅଟି ଟିକିଏ ହେଲେ ପଛଘୁଞ୍ଚା ଦେଲେ ନାହିଁ ।

ଆମେ ଦେଖିଲୁ, ସେ ହାତୀଗୁଡ଼ିକ କେବଳ ଆମ ପୋଷା ହାତୀ ଦୁଇଟିକୁ ଯାହାଁ ଖଣ୍ଡିଦୂରରେ ଠିଆ ହେଲେ । ପ୍ରବଳ ଭାବରେ ନିଆଁ ଜଳୁଥାଏ—ସେଇଥିପାଇଁ ପାଖକୁ ଆସିବାକୁ ତାଙ୍କର ସାହସ ହେଉ ନ ଥାଏ । ବୋଧହୁଏ ସେମାନେ ଠିଆ ହୋଇ ଆମ ହାତୀ ଦୁଇଟିକୁ ଦେଖି ଭାବୁଥିବେ, "ଆମ ସାଙ୍ଗ ଭାଇ ଦୁଇଟା ସେଠାରେ କଅଣ କରୁଛନ୍ତି ?"

ଏତେ ସାବଧାନ ହେବା ସତ୍ତ୍ୱେ ସେ ପଲ ଭିତରୁ ଗୋଟାଏ ଦନ୍ତା ଆମ ତମ୍ବୁଉପରେ ଆକ୍ରମଣ କଲା । ଯାହୁଁ ଯାହୁଁ ଜଣେ

ଲୋକକୁ ଶୁଣ୍ଢରେ ଧରି ଘୋଷାରି ନେଇ ତଳେ ପିଟିଦେଲା । ଆଖି ଆଗରେ ଏ ଦୃଶ୍ୟ ଦେଖି ଆମ ହାଲୁକ ଶୁଖିଗଲା । ତା ପରେ ଆଉ ଗୋଟିଏ ଆମ ପୋଷାହାତୀର ଶୁଣ୍ଢ ଧରି ଟାଣିଲା । ସେତେବେଳେ ଉପରେ ଆମ ହାତୀଟା ଏଡ଼େ ଗର୍ଜନ କଲା ଯେ; ବଣ ଗୋଟାସୁଦ୍ଧା କମ୍ପିଗଲା । ଅନ୍ୟ ଉପାୟ ନ ଦେଖି ଆମେ ସମସ୍ତେ ବନ୍ଧୁକ ଫାଏର କଲୁ । ଏକାବେଳକେ ଦୁଇ ତିନଟା ଗୁଳି ତା ଦେହରେ ବାଜନ୍ତି, ଆଉ ସେ ଦଳ୍ମା ସେଠାରେ ନ ରହି ପଛକୁ ହଟିଗଲା ।

ସେତେବେଳକୁ ରାତି ପାହି ଆସିଥିଲା । ଫର୍ଚ୍ଚା ହେଲା । ଦେଖିଲୁ, ହାତୀପଲ ବଣରେ ଅଦୃଶ୍ୟ ହୋଇଗଲେଣି । ଆମ ଭିତରୁ ଜଣେ ନୁହେଁ, ତିନଜଣ ତମ୍ବୁ ପାଖରେ ମରି ପଡ଼ିଅଛନ୍ତି । ସେମାନଙ୍କ ଦେହ କେବଳ ଗୋଟିଏ ଗୋଟିଏ ମାଂସପିଣ୍ଡୁଳା ହୋଇ ଚଲେଗଡ଼ୁଛି । ଗୋଟିଏ ପୋଷାହାତୀର ଅବସ୍ଥା ସାଂଘାତିକ ।

ଆମେ ସେଠାରୁ ତମ୍ବୁ ଉଠାଇ ନବଗପଦ ଜାଗାକୁ ଯିବାକୁ ବାହାରିଲୁ । ଖଣ୍ଡେ ଦୂର ବାଟ ଯାଇଛୁ; ଦେଖିଲୁ, ଗୋଟାଏ ହାତୀ ଆମକୁ ଲକ୍ଷ୍ୟ କରି ଆସୁଛି—ଆମଠାରୁ ଆଉ ମୋଟେ ପାଞ୍ଚ ଛଅ ହାତ ଦୂରରେ ରହିଛି । ମୁଁ ସାଙ୍ଗେସାଙ୍ଗେ ବନ୍ଧୁକ ଫୁଟାଇଲି, ତାର ଠିକ୍ ତାଳୁ ଉପରେ ଗୁଳି ବାଜିଲା । ଏହି ସମୟରେ ଆଉ ଦୁଇଜଣ ସାଙ୍ଗ ଦୁଇ କଡ଼ରୁ ବନ୍ଧୁକ ଚଳାଇଲେ । ଜଣକର ଗୁଳି ତା ପେଟରେ ଓ ଆଉ ଜଣକର ଗୁଳି ପିଠିରେ ଗଳିଗଲା । ଏ ତିନୋଟି ଗୁଳି ଖାଇଲା ପରେ ହାତୀଟା ତିନି ଫେରି ବୁଲି ତଳେ କଚାଡ଼ିହୋଇ ପଡ଼ିଗଲା ।

ମଲା ହାତୀଟାକୁ କଅଣ କରିବୁ, ଏହି କଥା ଠିଆ ହୋଇ ଭାବୁଛୁଁ; ଏହି ସମୟରେ ଅଳ୍ପ ଦୂରରେ ପାଟି ଶୁଭିଲା । ଆମ

ଭିତରୁ କାହା ଉପରେ ପୁଣି କଅଣ ବିପଦ ପଡ଼ିଲା ଭାବି ସମସ୍ତେ ଏକାବେଳକେ ଦଉଡ଼ିଲୁ; ମାତ୍ର ଆଗରେ ଯାହା ଦେଖିଲୁ, ସେଥିରେ ନ ହସି ରହିପାରିଲୁ ନାହିଁ ।

ଆମ ଖାନ୍‌ସମା ଖୁବ୍ ବଳୁଆ । କଳିଯୁଗର ଭୀମ ବୋଲି ଆମେ ତାର ନାମ ଦେଇଥିଲୁ । ସେ ମନକଲେ ଏକାବେଳକେ ପାଞ୍ଚଜଣ ଲୋକଙ୍କୁ ଦୁଇ ହାତରେ ଧରି କାବୁ କରିଦେବ ।

ସେହି କଳିଯୁଗର ଭୀମ ଗୋଟାଏ ହାତୀଛୁଆ ଶୁଣ୍ଢକୁ ଧରି ଟାଣୁଛି । ଛୁଆଟା ମଧ୍ୟ ତା ଗୋଡ଼ କାଢ଼େଇ ଛଟପିଟି ହେଉଛି । ସେ ଦେଶର ଲୋକେ କହିଲେ; ଯେଉଁ ହାତୀ ମଲା, ଏ ତ ତାର ଛୁଆ । ଏହାର ବୟସ ପାଞ୍ଚ ମାସରୁ ବେଶି ହେବ ନାହିଁ । ପାଞ୍ଚ ମାସର ଗୋଟିଏ ଛୁଆ ଯେ ଆମ କଳିଯୁଗର ଭୀମକୁ ଏପରି ନସ୍ୟାନ୍ତ କରିଦେବ, ତାହା କେହି କଳ୍ପନା କରି ନ ଥିଲୁ ।

ସମସ୍ତେ ମିଶି ସେ ଛୁଆକୁ ବାନ୍ଧି ପକାଇଲୁ । ମହାଭାରତ ଯୁଦ୍ଧରେ ଅଭିମନ୍ୟୁ ପରି ବୀରକୁ ସପ୍ତରଥୀ ଘେରିଆଡ଼ି ହେଇ ମାରିଥିଲେ । ତେଣୁ ଆମେ ପାଞ୍ଚଜଣ ଶିକାରୀ ଓ ଶହେ ପର୍ଯ୍ୟନ୍ତ କୁଲିଙ୍କ ହାବୁଡ଼ରୁ ପାଞ୍ଚମାସର ଛୁଆ ବଳପାଆନ୍ତା କିପରି ? ଆମ କଳିଯୁଗ ଭୀମ ହାତୀଛୁଆ ଯୁଦ୍ଧରେ ଏପରି ଘାଇଲା ହୋଇଥିଲା ଯେ, ସାତ ଦିନଯାଏ ଆଉ ବିଛଣାରୁ ଉଠିପାରି ନ ଥିଲା ।

---

ମୁଦ୍ରାକର—ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ, କଟକ—୨

